# ସମଲ୍‌ପୁରି-କୁସ୍‌ଲି ବିଚାରଧାରା

ହୃଦମଣିଁ ପ୍ରଧାନ୍

ପ୍ରକାସକ : ଅସିମ୍ ପ୍ରଧାନ୍
ପ୍ରଧାନ୍ ବୁକ୍ ଷ୍ଟୋର୍,
୩୩ ମିନି ଷ୍ଟେଡିଅମ୍ ମାର୍କେଟ୍ କମ୍‌ପ୍ଲେକ୍ସ୍,
ବର୍‌ଗଡ୍ - ୭୬୮୦୨୮,
ଫୋନ୍-୯୯୩୭୭୨୨୯୯୭
ଛପା ଠାନ୍ : ପ୍ରିନ୍‌ଟେକ୍ ଭେନ୍‌ଚର୍ସ୍ ପ୍ରା.ଲି., ବରେଇପାଲି, ସମଲ୍‌ପୁର୍

ପହେଲା ସଁସ୍କରଣଁ : ୨୦୧୪ / ୫୦୦ ଖଁଣ୍
ଦାମ୍ : ଟ ୬୦/-

SAMALPURI-KUSLI BICHARDHARA

Hrudamani Pradhan

Publisher : Asim Pradhan
PRADHAN BOOK STORE,
33 Mini Stadium Market Complex,
BARGARH - 768028, Ph. 9937722997

Printer : Printtech Ventures Pvt. Ltd., Baraipali, Sambalpur.

First Edition : 2014 / 500 copies
Price : Rs 60/-

# ଲେଖକର୍ ପଦେ

ସମଲ୍‌ପୁରି-କୁସ୍‌ଲି ଭାସା-ସାହିତ୍ୟ-ସଁସ୍କୃତିପ୍ରେମିଁ ମୋର୍ ଅତି ଆପ୍‌ନାଁର୍ ବିଦ୍ୱାନ୍ ବନ୍ଧୁମାନେଁ ଆରୁ ଛାତ୍ରମାନେଁ ଭିନ୍ ଭିନ୍ ସମିଆ ନଁ ଆରୁ ଭିନ୍ ଭିନ୍ ଠାନେଁ ଅନେକ୍ କଥା ଜାନ୍‌ବାକେ ମନ୍ କରିଛନ୍ । ପ୍ରସ୍‌ନଁ ସବୁ ପଚ୍‌ରେଇଛନ୍ । କଥା କଥା ଥିଁ ଉପ୍‌ରେଁ ଉପ୍‌ରେଁ ହେଁ ପ୍ରସ୍‌ନଁମାନ୍‌କର୍ ଉତ୍‌ତର୍ ଦେଇଁ ନେଇଁ ହଏ । ଜେନ୍ ସାଧାରଣଁ କଥା ସବୁ ସିଧା ସିଧା ଜାନ୍‌ବାର୍ ଲାଗିଁ ଆଏ, ଜେନ୍ତା କି, ଆମର୍ ଭାସାର୍ ପହେଲା ଛପା ବହି କେନ୍ ଟା ଆଏ, ଆମର୍ ଭାସାର୍ ଆଦି ଲେଖକମାନେଁ କିଏ କିଏ ଆନ୍, ଆମର୍ ଭାସାର୍ ପହେଲା ବ୍ୟାକରଣଁ କିଏ ଲେଖିଥିଲେ ଇତ୍ୟାଦି କଥା କଥା ଥିଁ କହିଁ ହେବା । ବାକି, ଆମର୍ ଭାସାର୍ ବର୍‌ନଁମାଲା, ଇତାର୍ ଲିପି, ଗୁଟେ ସବ୍‌ଦ ଭିନ୍ ଭିନ୍ ଭାସା ଥିଁ କେନ୍ତା ବେଭାର୍ ହେସି, ଆମର୍ ଭାସାକେ ଭାସା ବଲ୍‌ମାଁ କି ଉପଭାସା ବଲ୍‌ମାଁ ଇତ୍ୟାଦି ପ୍ରସ୍‌ନଁ ସବୁ ସମାଧାନ୍ କର୍‌ବାକେ, ଧ୍ୱନିଁତତ୍ତ୍ୱ, ରୁପତତ୍ତ୍ୱ, ଲିପିତତ୍ତ୍ୱ, ଉଧାର୍‌ଆନ୍‌ଲା ସବ୍‌ଦତତ୍ତ୍ୱ ଇତ୍ୟାଦିର୍ ଆଲୋଚନାଁ ବି କର୍‌ବାକେ ପର୍‌ସି । ସେ ସମାଧାନ୍ ସବୁ ନୋଟ୍ କଲେଁ ପ୍ରବନ୍ଧ ହେସି । ଏନ୍ତା କିଛି ପ୍ରବନ୍ଧ ଇ ଠାନେଁ ଠୁଲାହଇଛେ ।

ବହିର୍ ନାଁ ହଉଛେ **ସମଲ୍‌ପୁରି-କୁସ୍‌ଲି ବିଚାର୍‌ଧାରା** । ଅନେକ୍ ପ୍ରସ୍‌ନଁର୍ ଆଲୋଚନାଁ ଆରୁ ସମାଧାନ୍ ନୋଟ୍ କଲା ବେଲ୍‌କେ ସେ ପ୍ରସ୍‌ନଁମାନ୍‌କର୍ ବିଚାର୍ କର୍‌ବାର୍ ଟା କେଭୁଁ ମୁଲ୍ ହେଲା ଆରୁ ବିଦ୍ୱାନ୍‌ମାନେଁ ତାକର୍ କେନ୍ତା କେନ୍ତା ସମାଧାନ୍ କର୍‌ବାକେ ଚେସ୍‌ଟା କରିଛନ୍, ସେ ସବୁ ବିଚାର୍ କର୍‌ବାକେ ପଡିଛେ ବଲିଁ ଇ ବହିର୍ ନାଁ ଏନ୍ତା ହଇଛେ ।

ଇ ରକ୍‌ମର୍ ଆଲୋଚନାଁ ଆରୁ ସମାଧାନ୍ ଲେଖ୍‌ବାର୍ ଟା ମୁଲ୍ ହଇଛେ

"ସାତଟି ସମ୍ବଲପୁରୀ ସମସ୍ୟା (**ସପ୍ତର୍ଷି**, ମାର୍ଚ୍ଚ ୧୯୮୪)" ନୁଁ। "ଓଡିଶା ସାଂସ୍କୃତିକ ସମାଜର **ସ୍ମରଣିକା**(୧୯୯୫), ପଶ୍ଚିମ ଓଡିଶା ଅଗ୍ରଣୀ ସଂଗଠନ, ଭୁବନେଶ୍ୱରର **ସ୍ମରଣିକା**(୧୯୯୬)", ମନୋହର୍ ସାଁସ୍କୃତିକ୍ ସନ୍‌ସଦ୍, ଭେଡେନ୍‌ର **ସ୍ମରଣିକା** ସବୁ, **ଭରନିଁ**, **ନୁଆଁ ସକାଲ୍**, **ବଉଲ୍** ଇତ୍ୟାଦି ଆମର୍ ଭାସାର୍ ପତ୍ରିକାମାନ୍‌କେଁ ଇ ଆଲୋଚନାଁ ସବୁ ଆସିସାରିଛେ । କେତେ ଆଲୋଚନାଁ ଜେନ୍ତାକେ ସେନ୍ତା ଅଛେ ଆରୁ କେତେ ଠାନେଁ ସମିଆକେ ନେଇଁ କରିଁ ନୁଆଁ କରିଁ ଆଲୋଚନାଁ କର୍‌ବାକେ ପରିଛେ । ଇ ପତ୍ରିକାମାନ୍‌କର୍ ଆରୁ ସ୍ମରଣିକାମାନ୍‌କର୍ ସମ୍ପାଦକ ଆରୁ ତାକର୍ ଅନୁସ୍‌ଠାନ୍‌ମାନ୍‌କର୍ ନଁ ଲେଖକ କୃତଗ୍ୟଁ ଆଏ ।

ଜେନ୍‌ମାନେଁ ଇ ସବୁ ଗୁଟେ ବହି ଆକାରେଁ ଦେଖ୍‌ବାକେ, ପଡ୍‌ଭାକେ ଆରୁ ଆଲୋଚନାଁ କର୍‌ବାକେ ମନ୍ କରିଥିଲେ ସେମାନେଁ ହଉଛନ୍ ଆମର୍ ଭାସା-ସାହିତ୍ୟ-ସଁସ୍କୃତିର୍ ମହାଗୋର୍ ସଚେତନ୍ ଦଲେ ସାହିତ୍ୟକାର୍ । ସେମାନେଁ ହେଲେ ଧନ୍‌ପତି ମହାପାତ୍ର, କେସରଂଜନ୍ ପ୍ରଧାନ୍, ସୁବାସ୍ ମେହେର୍, ଉତ୍‌ପନ୍ନ ଭୋଇ, ସିବ ସଂକର୍ ପୂଜାରି ଆରୁ ସରଗ୍‌ବାସି ସାଧୁ ଚରନ୍ ପଟ୍‌ନାଏକ୍, ମୋତିଲାଲ୍ ପନ୍‌ଡା, ଦୟାଲୁ ଚରନ୍ ପାଣିଗ୍ରାହି ଆରୁ ପିତାମ୍ବର୍ ଗୁରୁ । ମୋର୍ ମାତୃଭାସାପ୍ରେମିଁ ପ୍ରତ୍ୟେକ୍ ଲେଖକ୍-ଲେଖିକା ନୁଁ ଜେନ୍ ଉତ୍‌ସାହ ଆରୁ ପ୍ରେରଣାଁ ମିଳିଛେ ତେହିର୍ ଲାଗିଁ ସମ୍‌କୁଁ ଧଏନ୍ ଧଏନ୍ ବଲୁଛେଁ । ମାହାପୁରୁ ଇ ସମ୍‌କର୍ ଜଏ ଜଏ କରୁ !

ହୃଦମଣିଁ ପ୍ରଧାନ୍
ଗୋବିନ୍ଦପାଲି ଛକ୍, ବର୍‌ଗଡ୍-୭୬୮୦୨୮

# ସୁଚ୍ନାଁ ପତର୍

ବିଷୟ ପୃଷ୍ଠା

## ଇ ବହି ଥିଁ ବେଭାର୍ ହଇଥିବାର୍ ବିସେସ୍ ଚିନ୍‌ହାଁମାନ୍‌କର୍ ଅରଥ:

ସାଧାରଣଁ ଭାବେଁ କମାଁ, ପୁର୍‌ନଁଛେଦ୍, ଉଦ୍‌ଧୃତି ଇତ୍ୟାଦି ଚିନ୍‌ହାଁ, ସବୁ ରକ୍‌ମର୍ ଲେଖାମାନ୍‌କେଁ ଦର୍‌କାର୍ ହେସି । ଇ ବହି ଥିଁ ଆରୁ କେତେଟା ବିସେସ୍ ଚିନ୍‌ହାଁ ବି ବେଭାର୍ ହଇଛେ ।

[ ] : ମୁହଁର୍ ଧ୍ୱନିଁ, ଉପଧ୍ୱନିଁ, ଧ୍ୱନିଁଗ୍ରାମ୍ ଆରୁ ଅଖର(ସିଲାବଲ୍) ।

/ / : ଧାତୁ, ପ୍ରତ୍ୟୟ, ସବ୍‌ଦ ଆରୁ ବାକ୍ୟାଂସ ।

( ) : ତଥ୍ୟ, ବିସେସ୍ କଥା ଆରୁ ଅର୍ଥ ।

~ : ତଫାତ୍ ନିର୍ଦ୍ଦେସକ ଆରୁ ବିକଲ୍‌ପ ।

**ମୁଟା ଅଖର୍** : ବହି, ପତ୍ରପତ୍ରିକା, ସିରୋନାମାଁ(ହେଡିଙ୍ଗ୍), ସୁତ୍ର ଆରୁ ସୁତ୍ରାତ୍ମକ କଥା ।

<u>ରେଖା</u> : ସିରୋନାମାଁ(ହେଡିଙ୍ଗ୍) ଆରୁ କେନ୍‌ସି କଥାକେ ଜୋର୍ ଦେବାର୍ ଟା ।

## ୧

# ସମଲ୍‌ପୁରି-କୁସ୍‌ଲି ବରନ୍‌ମାଲା

(୧)

ଭାସାଟେ ସିଖ୍‌ବାକେ ଜେନ୍ ବ୍ୟାକରଣ୍‌ଟେ ଲେଖାଜାଏସି ଆରୁ ଭାସା ସିଖ୍‌ବାର୍ ମୁଲ୍ କର୍‌ବାକେ ଜେନ୍ ପ୍ରାଇମର(PRIMER) ଲେଖାହେସି ସେ ଠାନ୍‌ମାନ୍‌କୁଁ ପହେଲା ଭାସାର୍ ବରନ୍‌ମାଲା ଦିଆଜାଏସି । ଦର୍‌କାର୍ ହେଲେଁ ସେ ବିସେ ନେଁ ଆଲୋଚନାଁ ବି କରାହେସି । ଇ ପ୍ରବନ୍ଧ ନେଁ ସମଲ୍‌ପୁରି-କୁସ୍‌ଲି ଭାସାର୍ ବରନ୍‌ମାଲା ବିସେ ନେଁ ଆଲୋଚନାଁ କରାହେବା । ସମଲ୍‌ପୁରି-କୁସ୍‌ଲି ଭାସା ଜହ କରିଁ ଆମର୍ ରାଏଜେଁ, ଛତିସ୍‌ଗଡେଁ ଆରୁ ଝାର୍‌ଖଁଣ୍ ନେଁ ବେଭାର୍ ହଉଛେ । ତେହିର୍ ଲାଗିଁ ଇ ଭାସାର୍ ବରନ୍‌ମାଲା ଓଡିଆ ଆରୁ ଦେବ୍‌ନାଗ୍‌ରି, ଦୁହି ଲିପି ଥିଁ ଠିକ୍ କର୍‌ବାର୍ ଟା ଉଚିତ୍ ହେବା । ଇ ବିସେ ନେଁ ବି ଇ ଠାନେଁ ଆଲୋଚନାଁ କରାହେବା ।

ମୁନ୍‌ସର୍ ମୁହଁର୍ ଭାସା ହଉଛେ ଅସଲ୍ ଭାସା । ତାର୍ ସାହିତ୍ୟ ଆଏଁକ୍‌କେ ଦିସ୍‌ଲା ବାଗିର୍ ଥୁରେ ଥେଇପାରେ ଆରୁ ନେଇଁ ଦିସ୍‌ଲା ବାଗିର୍ ବି ଥେଇପାରେ । ଗୁଟେ ଭାସାର୍ ଲିଖା ରୁପଟେ ଥେଇପାରେ, ନେଇଁ ବି ଥେଇପାରେ । ମୁହଁର୍ ଭାସାକେ ସଙ୍ଗ୍ରହ କରିଁ କରିଁ ପରିଖ୍ୟା କଲେଁ ଆମେଁ ଗୁଟେ ଠାନେଁ ପୁହୁଁଚିମାଁ ଜେନ୍ ନେଁ ସେ ମୁହଁର୍ ଭାସାର୍ କେତେଟା ଫଟିକ୍ ଧ୍ୱନିଁର୍ ଧାର୍‌ଟେ ବୁହିଁଜଉଛେ । ସେ ନେଁ ଇ ଟା ବି ଦେଖ୍‌ବାକେ ପାଏମାଁ ଜେ ଗୁଟେ କିସ୍‌ମର୍ ଧ୍ୱନିଁ ଅର୍ ଗୁଟେ କିସ୍‌ମର୍ ଧ୍ୱନିଁ ଠାନୁଁ ଫରକ୍ ଥିସି ବଲିଁ ସେମାନେଁ ଅଲ୍‌ଗା ଅଲ୍‌ଗା ଅର୍ଥ ଥିଁ ବେଭାର୍ ହେସନ୍ । ଇ ଥିର୍ ଆର କଥା ବି ସତ୍ ଆଏ । ଧ୍ୱନିଁମାନେଁ ଅଲ୍‌ଗା

ଅଲ୍‌ଗା ଅର୍ଥ ଥିଁ ବେଭାର୍ ହେସନ୍ ବଲିଁ ସେମାନେଁ ଅଲ୍‌ଗା ଅଲ୍‌ଗା ଆନ୍ । ଜେନ୍ତା, /କମ୍/ ସବ୍‌ଦର୍ [କ୍] ଠାନେଁ [ଖ୍] ଲେଖ୍‌ଲେଁ ହେବା /ଖମ୍/ । ଇ ସବ୍‌ଦମାନ୍‌କର୍ ଅର୍ଥ ଅଲ୍‌ଗା ଅଲ୍‌ଗା ଆଏ ବଲିଁ (କମ୍ : small amount or size, ଖମ୍ : pillar) ଇ ଧ୍ୱନିଁମାନ୍‌କୁଁ ଆମର୍ ଭାସାର୍ ଅଲ୍‌ଗା ଅଲ୍‌ଗା ଦୁଇଟା **ଧ୍ୱନିଁଗ୍ରାମ୍**(PHONEME) ବଲିଁ କହେମାଁ । ଇ କଥାକେ ଅର୍ ଟିକେ ଫଟିକ୍ କର୍‌ବାକେ ଇ ଦୁହି କୋମଲ୍-ତାଲବ୍ୟ ଧ୍ୱନିଁ ଇଙ୍ଗ୍‌ଲିସ୍ ଭାସା ଥିଁ କେନ୍ତା ହଉଛେ ଦେଖୁଁ । CAP[କେପ୍](ଟୁପି) ସବ୍‌ଦ ଥିଁ ପହେଲା ଜେନ୍ ଧ୍ୱନିଁ ଅଛେ ତାହାକେ ଆମର୍ ଭାସାର୍ [ଖ୍] ବାଗିର୍ ଉଚ୍‌ଚାରଣଁ କରାହେସି । ଜଦି ତାହାକେ [କ୍] ବାଗ୍ରି ଉଚ୍‌ଚାରଣଁ କରାଜିବା, ଆମେଁ ଜେନ୍ତା କର୍‌ସୁଁ, ଇଙ୍ଗ୍‌ଲିସ୍‌ମାନ୍‌କୁଁ ଟିକେ ଅବାଗିଆ ସୁବ୍‌ଭା ସିନେଁ, ଅର୍ଥ ଥିଁ କିଛି ଫରକ୍ ନେଇଁ ହଏ । [କେପ୍] ବଏଲେଁ ଜାହା [ଖେପ୍] ବଏଲେଁ ବି ଇଙ୍ଗ୍‌ଲିସ୍ ଭାସା ଥିଁ ସେ ଟାକେ ବୁଝାବା । ତେହିର୍ ଲାଗିଁ ହେଁ ନଁ [କ୍] ଆରୁ [ଖ୍] ଧ୍ୱନିଁମାନ୍‌କୁଁ ଗୁଟେ ଧ୍ୱନିଁଗ୍ରାମର୍ ଦୁଇଟା **ଉପଧ୍ୱନିଁ** (ALLOPHONE) ବଲିଁ କହେସନ୍ । ଆମର୍ ଭାସା ଥିଁ [କ୍] ଆରୁ [ଖ୍] ଅଲ୍‌ଗା ଅଲ୍‌ଗା ଧ୍ୱନିଁଗ୍ରାମ୍(PHONEME) ହେଲା ବେଲ୍‌କେ, ଇଙ୍ଗ୍‌ଲିସ୍ ଭାସା ଥିଁ ହେଁ ଦୁହି ଧ୍ୱନିଁକୁଁ ଗୁଟେ ଧ୍ୱନିଁଗ୍ରାମର୍ ଦୁଇଟା ଉପଧ୍ୱନିଁ ବଲିଁ ନିଆହେସି ।

ତେହେରୁଁ ଆସୁଁ **ବରନ୍‌ଁ**(LETTER) ନିକେ । ମୁହିଁର୍ ଭାସାକେ ଲେଖ୍‌ଲେଁ ବରନ୍‌ଁ ସବୁ ଦର୍‌କାର୍ । ଧ୍ୱନିଁର୍ ଚିନ୍‌ହାଁ ହିସାବେଁ ବରନ୍‌ଁମାନ୍‌କୁଁ ବେଭାର୍ କରାହେସି । ତିନ୍-ଚାଏର୍ ବରସିଆ ଛୁଆଟେ ତାର୍ ମାତୃଭାସା ସିଖିସାରିଥିସି । ଧରୁନ୍, ଇହାଦେ ସେ ଲେଖ୍‌ବାର୍ ମୁଲ୍ କରୁଛେ । ସ୍ୱର ବରନ୍‌ଁ ସବୁ ଲେଖି ଜାନିଛେ । ଆପଣ୍ ତାହାକେ ଲେଖ୍‌ବାକେ କହେଲେ ‘ଆ’ । ସେ ଲେଖ୍‌ଲା । ତେହେରୁଁ ଲେଖ୍‌ବାକେ କହେଲେ ‘ଈ’ । ସେ ଜଦି ଉଡିଆ ବରନ୍‌ଁମାଲା ଲେଖ୍‌ବାର୍ ଟା ସିଖୁଛେ ବଏଲେଁ ସେ ନଁ ଟିକେ ଅଟ୍‌କିବା । ‘ଆ’ ଲେଖ୍‌ଲା ବାଗିର୍ ଧାଏଁକଲା ନେଇଁ ଲେଖେ । ତେହେରୁଁ ଆପଣ୍ ଛୁଆକେ ‘ଦୀର୍ଘ ଈ’ ଲେଖ୍‌ବାକେ କହେବେ । ଇ ଦୁହି ବରନ୍‌ଁ ଲେଖି ସାଏଲେଁ ଆପଣ୍ ‘ଆ’କେ ଦେଖେଇଁ କରିଁ ପଚ୍‌ରାଲେଁ ସେ ବଲ୍‌ବା [ଆ] ଆରୁ ‘ଈ’କେ ଦେଖେଇଁ କରିଁ ପଚ୍‌ରାଲେଁ ବଲ୍‌ବା [ଇ] । ତାହାକେ ଦିରଘ କରିଁ

ଉଚ୍ଚାରଣଁ କରିପାରେ, ନେଇଁ ବି କରିପାରେ । ବାକି ଜେନ୍‌ମାନ୍‌କର୍ ବରନ୍ନଁ ପରିଚୟ ନେଇଁନ୍ ତାହାକୁଁ ଇ ବରନ୍ନଁମାନ୍‌କୁଁ ଦେଖେଇଁ କରିଁ ପଚ୍‌ରାଲେଁ କିଛି କହି ନେଇଁ ପାରନ୍ । ତ, ଇ ନଁ ମୁଟାମୁଟି ଜେନ୍ତା ଜେନ୍ତା ହେଲା ସେ ଟା ହଉଛେ, (୧) ମୁହେଁ ଧ୍ୱନିଁଟେ ଉଚ୍ଚାରଣଁ କରାଗଲା : (୨) କଲାପଟା, ସିଲେଟ୍ କି କାଗଜ୍ ଉପ୍‌ରେଁ କିଛି ଗୁଟେ ଚିନ୍‌ହାଁ ଲେଖାଗଲା ଆରୁ ଇ ଟା ସେ ଧ୍ୱନିଁ ଆଏ ବଲିଁ ସିଖାଗଲା : (୩) ଲେଖା ହଇଥିଲା ଜିନିସ୍‌କେ ଇ ଟା କାଣାଁ ଆଏ ବଲିଁ ପଚ୍‌ରାଲେଁ ସିଖିଥିଲା ଲୋକ୍ ସେ ଟାକେ ସେନ୍ତା ଉଚ୍ଚାରଣଁ କଲା ।

ଧ୍ୱନିଁ → ବରନ୍ନଁ → ଧ୍ୱନିଁ

ବରନ୍ନଁ ହଉଛେ ଧ୍ୱନିଁଗ୍ରାମର୍ ଚିନ୍‌ହାଁ । ଧ୍ୱନିଁବିଗ୍ୟାନର୍ ଧାରା ଥିଁ ଗୁଟେ ଭାସାର୍ ଧ୍ୱନିଁଗ୍ରାମ୍ ସବୁ ଠିକ୍ କରି ସାଏଲା ଉତାରୁଁ ସେ ଭାସାର୍ ଜେତ୍‌କିଟା ଧ୍ୱନିଁଗ୍ରାମ୍ ଅଛେ ସେତ୍‌କିଟା ବରନ୍ନଁ ଠିକ୍ କଲେଁ ଆରୁ ତେହିଁ ସେ ଭାସାକେ ଲେଖ୍‌ଲେଁ ବରନ୍ନାଁସୁଦ୍‌ଧି(SPELLING MISTAKE) ବଲିଁ କଥାଟେ ନେଇଁ ରହେ । ଧ୍ୱନିଁଗ୍ରାମ୍ ଆରୁ ବରନ୍ନଁ ଗୁଟ୍‌କ ଗୁଟେ ହଇ ପାର୍‌ଲେଁ ସବ୍‌ଦମାନ୍‌କର୍ ବନାନ୍ ଇ ଟା ହେବା କି ସେ ଟା ହେବା ବଲିଁ ବିଚାର୍ କର୍‌ବାକେ ନେଇଁ ପରେ ।

ଭାସା-ସାହିତ୍ୟ-ସଁସ୍କ୍ରୁତି ନଁ ସ ସ ବର୍‌ସର୍ ସାଧନାଁକେ ନେଇଁ କରିଁ ଗୁଟେ ପରମ୍ପରା ତିଆଁର୍ ହେସି । ଭଲ୍ ହଉ କି ଅସାର୍ ହଉ, ସୁବିଧା ହଉ କି ଅସୁବିଧା ହଉ, ଜହ କରିଁ ଭାସା ଆରୁ ସାହିତ୍ୟ ନଁ ତାହାକେ ସହଜେଁ ବଦ୍‌ଲେଇଁ ନେଇଁ ହଏ । ତେହିର୍ ଲାଗିଁ ଜେନ୍‌ମାନେଁ ନିଜର୍ ମାତ୍ରୁଭାସାକେ ସଫା, ସରଲ୍ ଆରୁ ସୁନ୍‌ଦର୍ କର୍‌ବାକେ ଚିନ୍‌ତା କରୁଛନ୍ ତାହାକୁଁ ବନ୍‌ଏ କରିଁ ଭାବିଁ ଚିନ୍‌ତିଁ କରିଁ ତାର୍ ଲେଖା ରୁପକେ ଠିକ୍ କର୍‌ବାକେ ପଡ୍‌ବା ।

ସଚେତନ୍ ହଇଁ କରିଁ ସମଲ୍‌ପୁରି-କୁସ୍‌ଲି ଥିଁ ଲେଖ୍‌ବାର୍ ଟା ୧୯୮୦ ମସିହା ନୁଁ ଇ ପାଖର୍ କଥା ଆଏ । ତା୧୧ । ୦୩ । ୧୯୮୪ ଦିନ୍ନଁ ବଲାଙ୍ଗିର୍ ଜିଲା ଲେଖକ ସଂଘର୍ ସଭା ନଁ ସମଲ୍‌ପୁରି-କୁସ୍‌ଲି ଭାସା ଥିଁ ଲେଖ୍‌ବାର୍ ଲାଗିଁ ଓଡିଆ ଲିପି ଆରୁ ଦେବ୍‌ନାଗ୍‌ରି ଲିପି, ଦୁହିଟା ବେଭାର୍ କରାଜଉ ବଲିଁ କଥା

ପରିଥିଲା ( ୧ ) । ତାର୍ ମାସେ ଉତାରୁଁ ତା୧୪ । ୦୪ । ୧୯୮୪ ମେରୁ ପରବ୍ ଦିନ୍ଁ ସମଲ୍‌ପୁରି ଲେଖକ ସଂଘ ଟାଉନ୍ ହାଇସ୍କୁଲ୍ (ନରସିଙ୍ଗ୍ ଗୁରୁ) ହଲ୍ ନ୍ଁ ଜେନ୍ ସଭାଟେ କଲେ ସେ ନ୍ଁ ଉଡିଆ ଲିପି ଥିଁ କେନ୍ତା କରିଁ ଲେଖ୍‌ଲେଁ ଆମର୍ ଭାସାର୍ ସବୁ ଧ୍ୱନି଼ଁ ଠିକ୍ କରିଁ ଲେଖିଁ ହେବା ତାର୍ ବି ସାନ୍ ସୁରୁ ଚରଚାଟେ ହଇଥିଲା( ୨ ) । ସେ ବର୍‌ସ ସମଲ୍‌ପୁର୍ ମୁନ୍‌ସିପାଲ୍‌ଟି ସଭାଘରେଁ ତା୦୧ । ୦୮ । ୧୯୮୪ ଦିନ୍ଁ ସମଲ୍‌ପୁରି ଧ୍ୱନି଼ଁତତ୍ୱର୍ ପରିଚୟର୍ ଲାଗିଁ ଗୁଟେ ବିସେସ୍ ସଭା ହଇଥିଲା । ଇ ବରସ୍ ଟା ଥିଲା ଚେତ୍‌ବାକେ, ତହଁକିବାକେ ଆରୁ ଆମର୍ ଭାସାକେ ସଫାସଫା, ସହଜ୍, ସରଲ୍ ଆରୁ ସୁନ୍‌ଦର୍ କରିଁ ଲେଖ୍‌ବାର୍ ଲାଗିଁ ବିକଲ୍‌ପ ସବୁ ନୁର୍‌ବାକେ । ଆମେଁ ଜେନ୍ତା କହୁଛୁଁ, ପାରୁଁ ପରଜନ୍ତେ ସେନ୍‌ତା ଲେଖ୍‌ମାଁ ବଲିଁ ବିଚାର୍ କରାଗଲା । ଇ କଥା ବିଗ୍ୟାନ୍‌ସମ୍ମତ୍ କଥା ଆଏ ବଲିଁ ଭାସାତତ୍ୱବିତ୍‌ମାନେଁ ଆମ୍‌କୁଁ ଅପ୍‌ନାବାକେ କହେସନ୍ । ଏଖେଇ ଗୁଟେ ଉଦାହରନ୍ ଦେଲେଁ ଜେତ୍‌ତେତେ ହେବା । ଉଡିଆ ଭାସାତତ୍ୱର୍ ଝନେ ମୁଲିହାର୍, ଅତି ବିଖ୍ୟାତ୍ 'ପଣ୍ଡିତ ଗୋପୀନାଥ ନନ୍ଦଶର୍ମ୍ମା' ତାକର୍ ଅତି ବିଖ୍ୟାତ୍ ଗରନ୍‌ଥ **'ଓଡ଼ିଆ ଭାଷାତତ୍ତ୍ୱ(୧୯୯୫)'**ର୍ ୧୯୪ ପ୍ରୁସ୍‌ଠା ନ୍ଁ କହୁଛନ୍, "ତେବେ ପିଲାଙ୍କ ମୁଖ(READING)ରେ ଶକାର କରାଇବ କି ସକାର ? ଯଦି ଶକାର ବୋଲ, ତେବେ ପିଲାଙ୍କର ଅଭ୍ୟାସର ବିରୁଦ୍ଧ ହେବ । ଅତଏବ ଯାହା ଉଚ୍ଚାରଣରେ ଅଭ୍ୟସ୍ତ, ତାହା ହିଁ ଲେଖିବା ଉଚିତ ଏବଂ ଯାହା ଲେଖିବ, ତାହା ହିଁ ଉଚ୍ଚାରଣରେ ଅଭ୍ୟସ୍ତ କରିବା ଉଚିତ । ମାତ୍ର ଉଚ୍ଚାରଣ ବିରୁଦ୍ଧ ଲେଖା କିମ୍ବା ଲେଖା ବିରୁଦ୍ଧ ଉଚ୍ଚାରଣ କଥଂଚିତ୍ ଉଚିତ ହୋଇ ନ ପାରେ ।"(୩) ।

ତେହେଗୁଁ ଉଡିଆ ଲିପିର୍ ବର୍‌ନ୍ଁମାନ୍‌କୁଁ କାଟ୍‌ବାଟ୍ କରିଁ ନିଜର୍ ଭାସାର୍ ଲାଗିଁ ଜେନ୍ତା ଠିକ୍ ହେବା, ସେନ୍ତା ଗୁଟେ ବର୍‌ନ୍ଁମାଲା ଠିକ୍ କରାଗଲା । ଆରୁ ତାହାକେ କୁହାଗଲା ସମଲ୍‌ପୁରି ବର୍‌ନ୍ଁମାଲା(ସମଲ୍‌ପୁରି-କୁସ୍‌ଲି ବର୍‌ନ୍ଁମାଲା) । କଥା ଟା ଅନେକ୍ ଲେଖକ ବନ୍‌ଧୁକର୍ ମନ୍‌କେ ଆଏଲା । ଅନେକ୍ ବନ୍‌ଧୁ ବୁଝ୍‌ଲେନ୍ଁ ଜେ ସମଲ୍‌ପୁରି-କୁସ୍‌ଲିକେ ତାର୍ ବର୍‌ନ୍ଁମାଲା ଥିଁ ଲେଖ୍‌ଲେଁ ସହଜ୍, ସରଲ୍, ସାପ୍, ସୁନ୍ଦର ଆରୁ ଧ୍ୱନି଼ଁବିଗ୍ୟାନ୍‌ସମ୍ମତ୍ ହେବା ତ ନିସ୍‌ଚେ, ଇତାର୍ ଦୁଆରା ଆମର୍

ଭାସାର୍ ଅଲଗ୍‌ପନ୍(ସ୍ୱାତନ୍ତ୍ରିଅ) ବି ଉବାଗର୍ ହେବା ।

ଅସି ଦସକର୍ ଆଗୋ ଆମେଁ ଲେଖୁଥିଲାଁ ପାଖେ ଆରୁ କହୁଥିଲାଁ ପାଖେ । ସମଲ୍‌ପୁରି ବଲିଁ ଲେଖୁଥିଲାଁ ବିକୃତ୍ ଉଡିଆ । ଲେଖୁଥିଲାଁ 'କହ୍ନା' ଆରୁ କହୁଥିଲାଁ 'କନ୍‌ହାଁ', ଲେଖୁଥିଲାଁ 'ପହ୍ଲା' ଆରୁ କହୁଥିଲାଁ 'ପଲ୍‌ହା', ଲେଖୁଥିଲାଁ 'ଟଣ୍ଣେଇ' ଆରୁ କହୁଥିଲାଁ 'ଟଣ୍‌ହେଇ' ଇତ୍ୟାଦି । ଆମେଁ କହୁଛୁଁ 'ବୁଦ୍‌ଭାର୍', 'ପଡ୍‌ଭା' ଇତ୍ୟାଦି ଆରୁ ଲେଖୁଛୁଁ 'ବୁଧ୍‌ବାର୍', 'ପଢ଼୍‌ବା' ଇତ୍ୟାଦି । ଆମେଁ ତ 'ଚାସି' ଲେଖିପାର୍‌ମାଁ, କାଁ କରି ଲେଖ୍‌ମାଁ 'ଚାଷୀ' ଆରୁ କହେମାଁ 'ଚାସି' ବଲିଁ ?

ଆମର୍ ଭାସା-ସାହିତ୍ୟପ୍ରେମିଁ ଅଧ୍ୟାପକମାନେଁ ସମଲ୍‌ପୁରି-କୁସ୍‌ଲି ଭାସାର୍ ଧ୍ୱନିଁତତ୍ତ୍ୱ, ରୁପତତ୍ତ୍ୱ, ପଦରଚନାଁ ଇତ୍ୟାଦିକେ ନେଇଁ କରିଁ ଗବେସଣାଁ କରିବସ୍‌ଲେ । କିଏ କିଏ ଆମର୍ ଭାସାର୍ ବ୍ୟାକରଣଁ ଚର୍‌ଚା କରିଛନ୍ ଆରୁ ସେ ସବୁ କେନ୍ତା ହଇଛେ, ଦେଖ୍‌ବାକେ, ଜାନ୍‌ବାକେ ଚେସ୍‌ଟା କରାଗଲା(୪) ।

ତେହେଲୁଁ ଧ୍ୱନିଁବିଗ୍ୟାନର୍ ଧାରା ଅନ୍‌ସାରେଁ ଉଡିଆ ଲିପି ନୁଁ ଆମର୍ ଭାସାର୍ ବର୍‌ନଁମାଲା ଠିକ୍ କରାଗଲା । ଆମର୍ ଭାସାକେ ଠିକ୍ ଭାବେଁ ଲେଖ୍‌ବାକେ ଇ ଭାସାର୍ ଜେତ୍‌କି ଧ୍ୱନିଁଗ୍ରାମ୍ ଅଛେ ଆରୁ ଜହ ବେଭାର୍ ହଉଥିବାର୍ ଉପଧ୍ୱନିଁ ଅଛେ ସେତ୍‌କିଟା ବର୍‌ନଁ ନେଇଁ କରିଁ ଲେଖ୍‌ଲେଁ ଅବିସ୍ ଠିକ୍ ହେବା ବଲିଁ ବିଚାର୍ କରାଗଲା । ((ସମଲ୍‌ପୁରି ବ୍ୟାକରଣଁ ଚର୍‌ଚା(୧୯୮୪), ସମଲ୍‌ପୁରି ଅଖର୍ (୧୯୯୩), ସମଲ୍‌ପୁରି ଧ୍ୱନିଁତତ୍ତ୍ୱ ଆରୁ ବର୍‌ନଁମାଲା(୧୯୯୯) ଇତ୍ୟାଦି । ଧ୍ୱନିଁତତ୍ତ୍ୱ ଆରୁ ବର୍‌ନଁମାଲା(୧୯୯୯) ପ୍ରବନ୍ଧ ଟା ତା.୦୪-୦୧-୧୯୯୯ ଦିନଁ ସମଲ୍‌ପୁର୍ ଲୋକମହୋତ୍‌ସବର୍ ଆଲୋଚନାଁ ଆସର୍ ନଁ ପଢାହଇଥିଲା ।))

ନିଜେଁ ଜାହା ଭାବୁଛୁଁ ଆରୁ ଅନୁଭବ୍ କରୁଛୁଁ, ସେ ଟା ଦୁସ୍‌ରାମାନ୍‌କୁଁ ନେଇଁ କହେଲେଁ ଜେନ୍ତା କି ନେଇଁ ଚଲେ । ନିଜର୍ କଥା କହେବାକେ ଆରୁ ଦୁସ୍‌ରାମାନ୍‌କର୍ କଥା ସୁନ୍‌ବାକେ ଭାସାଟେ ଦର୍‌କାର୍ । ପର୍‌ତି ଦିନ୍ ଆମେଁ ଜେନ୍ କଥା ହେସୁଁ, ସୁନ୍‌ସୁଁ, ହେଁ ସବୁକେ କହିଁ ନେଲେଁ ଆରୁ ସୁନିଁ ନେଲେଁ ହେଲା । ବାକି ଏନ୍ତା କେତେ କଥା ଅଛେ ଖାଲି ସୁନିଁ ନେଲେଁ ନେଇଁ ଚଲେ । ମନେଁ ରଖ୍‌ବାକେ ମନ୍ ଲାଗ୍‌ସି । ଜେନ୍‌ମାନେଁ ଥିଲେ ତାକର୍ କଥା, ଜେନ୍‌ମାନେଁ ଅଛନ୍ ଆରୁ ଜେନ୍‌ମାନେଁ ଆଏବେ, ହେଁ ସମ୍‌କିରିର୍ ଉପକାର୍‌କେ ଆଏବାର୍ କଥାମାନ୍‌କୁଁ ଲୋକ୍ ଉତାର୍‌କେ ଉତାର୍ କହୁଥିଲେ ଆରୁ ସୁନିଁ ସୁନିଁ ମନେଁ ରଖୁଥିଲେ । ଏନ୍ତା ଗୁଟେ ସମିଆ ଆଏଲା ଜେ ଇ ସବୁ କଥା ମନେଁ ରଖ୍‌ବାର୍ ଟା ଗୁର୍‌ଦୁ କାଏଡ୍ ହେଲା । ଭରନ୍ ଭରନ୍ ଗିତ୍, କଥାନିଁ ଆରୁ ତେହିର୍ ଭିତ୍‌ରେଁ ଥିଲା ଗ୍ୟାନ୍‌କେ ଆଏବା ପିଢିମାନ୍‌କର୍ ଲାଗିଁ ଠୁଲେଇଁ କରିଁ ରଖ୍‌ବାର୍ ଦର୍‌କାର୍ ପର୍‌ଲା । ତେହିର୍ ଲାଗିଁ ବିଦ୍ୱାନ୍‌ମାନେଁ ଆରୁ ଗୁଣଁବାନ୍ ଲୁକେ ହଜାର୍ ହଜାର୍ ବରସ୍ ଧରିଁ କରିଁ ଜେନ୍ ଉପେ-ଚକର୍ ସବୁ ନୁରି ବସ୍‌ଲେ ସେ ନୁଁ ମୁନ୍‌ସର୍ ସଭ୍ୟତାକେ ଆଏଲା ଇ ଲେଖ୍‌ବାର୍ ଧାରା ।

ଜେନ୍ ଜେନ୍ ନଁ ଜାଁଜାଁଣାଁ ଲେଖାହଇଛେ, ବଏଲେଁ ମାଟିର୍ ଆରୁ କାଠର୍ ପଟା ଥିଁ, ପଖ୍‌ନେଁ, ତାଲ୍‌ପତ୍‌ରେଁ, ଭୁର୍‌ଜ ପତ୍‌ରେଁ, କାଗଜ୍ ବାଗିର୍ ପେପିରସ୍(PAPYRUS) ଉପ୍‌ରେଁ, ସେ ସବୁକେ ପରିଖ୍ୟା କଲେଁ ଜନାଁ ପର୍‌ସି ଇ ଲେଖା ସବୁ ଦୁଇ ପ୍ରକାର୍ । ମିସର୍ ଦେସର୍ **ଫଟୁ-କଟା ଲେଖା ସବୁ** (HIEROGLYPHS) ଆରୁ ଚିନ୍ ଦେସର୍ **ଅର୍ଥସୁଚକ୍ ଲେଖା ସବୁ** (CHARACTERS) ଗୁଟେ କିସ୍‌ମର୍ ଲେଖା । ଇ ନଁ ଲେଖା ସବୁ ସିଧା ଅର୍ଥକେ କହେସନ୍ । ଜେନ୍ତା ଆଏଜ୍‌କାଲିର୍ କମିକ୍ସ କି ଚିତ୍ରକଥା । ଇ ନଁ କଥାନିଁ ବହିମାନ୍‌କେଁ ଉତାର୍‌କେ ଉତାର୍ ଫଟୁମାନେଁ ଦିଆହଇଥିସି । ଫଟୁମାନ୍‌କର୍ ତଲେଁ ଲେଖାମାନ୍‌କୁଁ ପଢି ନେଇଁ ପାର୍‌ଲା ଲୁକେ ବି କଥା ଟା କାଁଣାଁ ଆଏ ଜାନିପାର୍‌ସନ୍ । ଇ ଫଟୁକଟା ଲେଖା ପାଖାପାଖି ହେନ୍ତା ଆଏ । ଦୁସ୍‌ରା ପ୍ରକାର୍ ଲେଖା ନଁ ବର୍‌ନଁ

ସବୁ ବେଭାର୍ କରାଜାଏସି । ଇ ନଁ ବର୍‌ନଁ ସବୁ **ସବ୍‌ଦମାନ୍‌କର୍ ଚିନ୍‌ହାଁ** ଭାବେଁ ବେଭାର୍ ହଇପାରନ୍, ଜେନ୍ତା ଜାପାନିଁ ଥିଁ ହେସି । ଆମେଁ ଜେନ୍ତା ଏକ୍, ଦୁଇ, ତିନ୍ ଇତ୍ୟାଦି ନେଇଁ ଲେଖିଁ କରିଁ ୧, ୨, ୩ ଇତ୍ୟାଦି ଲେଖ୍‌ଲେଁ ବି ସେମାନ୍‌କର୍ ଅର୍ଥକେ ଠିକ୍ ବୁଝି ପାର୍‌ସୁଁ ହେନ୍ତା କଥା ଆଏ । ଫେର୍ ବର୍‌ନଁ ସବୁ **ଅଖର୍‌ମାନ୍‌କର୍ ଚିନ୍‌ହାଁ** ବି ହଇପାରନ୍, ଜେନ୍ତା ଦେବ୍‌ନାଗ୍‌ରି, ଉଡିଆ, ବଙ୍ଗାଲି ଆଦି ଲିପି ଥିଁ ହେସି । ନେଇଁ ତ ବର୍‌ନଁ ସବୁ **ଧ୍ୱନିଁଗ୍ରାମ୍‌ମାନ୍‌କର୍ ଚିନ୍‌ହାଁ** ବି ହଇପାରନ୍, ଜେନ୍ତା ରୋମାନ୍ ଲିପିର୍ ବର୍‌ନଁ ସବୁ ବେଭାର୍ ହେସନ୍ । ଏନ୍ତା କି ବର୍‌ନଁ ସବୁ ଖାଲି **ମୁହଁର୍ ଧ୍ୱନିଁମାନ୍‌କର୍ ଚିନ୍‌ହାଁ** ବି ହଇପାରନ୍, ଜେନ୍ତା INTERNATIONAL PHONETIC ALPHABET ଥିଁ ହେସି । ତାର୍ ମାନେଁ ବର୍‌ନଁ ସବୁ ଧ୍ୱନିଁସୁଚକ୍ ହେବାର୍ ସାଙ୍ଗେଁ ଅର୍ଥସୁଚକ୍ ବି ହଇପାରନ୍, ନେଇଁ ତ ଖାଲି ଧ୍ୱନିଁସୁଚକ୍ ହଇପାରନ୍ ।

ଧ୍ୱନିଁମାନ୍‌କର୍ ହେନ୍ତା କିଛି ଅର୍ଥ ନେଇଁ ଥାଏ । ବାକି, ଟିକେ ଆଗୋ ଆମେଁ ଆଲୋଚନାଁ କରିସାରିଛୁଁ ଜେ ଧ୍ୱନିଁଟେ ଜେତେବେଳେଁ ଗୁଟେ ଭାସାର୍ ଧ୍ୱନିଁ ହିସାବେଁ ବେଭାର୍ ହେସି, ତାହାକେ ସେ ଭାସାର୍ ଧ୍ୱନିଁଗ୍ରାମ୍‌ଟେ ବଲିଁ କହେସନ୍ । ତେହେଲୁଁ ସେ ଭାସାର୍ ଧ୍ୱନିଁତତ୍ୱ(PHONOLOGY)ର୍ ନିଅମ୍ ଅନ୍‌ସାରେଁ ଗୁଟେ ଧ୍ୱନିଁଗ୍ରାମ୍ ହଉ କି ଏକା ସାଙ୍ଗେଁ ଅନେକ୍ ଧ୍ୱନିଁଗ୍ରାମ୍ ହଉନ୍ **ସବ୍‌ଦ**(WORD) ହିସାବେଁ ଅର୍ଥ ପ୍ରକାସ୍ କର୍‌ସନ୍ । ଗୁଟେ ଭାସା ଥିଁ କିଛି ଲେଖ୍‌ବାକେ ତାର୍ ଧ୍ୱନିଁଗ୍ରାମ୍‌ମାନ୍‌କର୍ ଚିନ୍‌ହାଁ ହିସାବେଁ ଜାହା ସବୁ ନିଆଜାଏସି ସେ ଚିନ୍‌ହାଁ ସବୁକେ ସେ ଭାସାର୍ **ଧ୍ୱନିଁସୁଚକ୍ ବର୍‌ନଁମାଲା**(PHONETIC ALPHABET) ବଲିଁ କହେସନ୍ ।

ଗୁଟେ ଭାସାର୍ ଧ୍ୱନିଁସୁଚକ୍ ବର୍‌ନଁମାଲା ଆରୁ ଗୁଟେ **ଲିପି**(SCRIPT)ର୍ ବର୍‌ନଁମାଲା ଭିତ୍‌ରେଁ ଜେନ୍ ଫରକ୍ ଅଛେ ସେ ଟା ଅଲପ୍ ଟିକେ ଆଲୋଚନାଁ କରୁଁ । ଭାସାର୍ ଧ୍ୱନିଁସୁଚକ୍ ବର୍‌ନଁମାଲା ହଉଛେ ସେ ଭାସାର୍ ଧ୍ୱନିଁଗ୍ରାମ୍ ଆରୁ କିଛି ଉପଧ୍ୱନିଁମାନ୍‌କର୍ ଚିନ୍‌ହାଁ ସବୁ । **ଲିପିର୍ ବର୍‌ନଁମାଲା** ହଉଛେ ଗୁଟେ ଧାରା (STYLE) ଥିଁ ଲେଖା ହଇଥିଲା ଚିନ୍‌ହାଁ ସବୁ : ଜେନ୍ତା ଚାଏର୍‌ଖୁଟିଆ ଦେବ୍‌ନାଗ୍‌ରି

ଲିପି, ତିନ୍‌ଖୁଟିଆ ବଙ୍ଗାଲି ଲିପି ଆରୁ ଗୋଲ୍‌ଗୋଲ୍ ଉଡିଆ ଲିପି । ଦୁଇ ନମର୍ କଥା ହେଲା **ଗୁଟେ ଲିପିର୍ ବରନ୍‌ମାଲାକେ ଖାଲି ଗୁଟେ ଭାସା ବେଭାର୍ କରିପାରେ, ଅନେକ ଭାସା ବି ବେଭାର୍ କରିପାରନ୍** । ତେହିର୍ ଲାଗିଁ ଭାସାର୍ ଧ୍ୱନିଁସୁଚକ୍ ବରନ୍‌ମାଲା ଆରୁ ଲିପିର୍ ବରନ୍‌ମାଲା ଜେତ୍‌କିକେ ସେତ୍‌କି ହଇପାରେ, ନେଇଁ ବି ହଇପାରେ । ୟୁରୋପ୍ ମହାଦେସର୍ ବଡ୍ ଭାଗ ଭାସା ରୋମାନ୍ ଲିପିର୍ ଛବିସ୍‌ଟା ବରନ୍ ବେଭାର୍ କର୍‌ସନ୍ । ଆମର୍ ଦେସେଁ ଉତ୍‌ତର୍‌କେ ଆରୁ ପଛିମ୍‌କେ ଦେବ୍‌ନାଗ୍ରି ଲିପି, ପୁରୁବ୍‌କେ ବଙ୍ଗାଲି ଆରୁ ଉଡିଆ ଲିପି ତ ଦଖିନ୍‌କେ ତେଲ୍‌ଗୁ, ତାମିଲ୍, କନ୍ନଡ୍ ଆରୁ ମାଲାୟାଲମ୍ ଲିପି ସବୁ ଚଲିଁଅଉଛେ । ଟିକେ ଗଁଚେ ତଫାତ୍ ଥିଲେଁ ବି ରାଜସ୍‌ଥାନିଁ, ଗୁଜ୍‌ରାତି, ମରାଠି, ହିନ୍ଦି, ଅବଧି, ଭୋଜ୍‌ପୁରି ଇତ୍ୟାଦି ଭାସାମାନ୍‌କର୍ ଲିପି ହଉଛେ ଦେବ୍‌ନାଗ୍ରି । ବଙ୍ଗାଲି, ଅହମିଆ(ଆସାମିୟା) ଆରୁ ମଇଥିଲି( ? ) ଭାସାମାନ୍‌କର୍ ଲିପି ହଉଛେ ବଙ୍ଗାଲି । ଉଡିଆ ଆରୁ ଇହାଦେର୍ ସମଲ୍‌ପୁରି-କୁସ୍‌ଲି ଭାସାମାନ୍‌କର୍ ଲିପି ହଉଛେ ଉଡିଆ । ତିନ୍ ନମର୍ କଥା ହେଲା, ଗୁଟେ ଭାସାର୍ ଧ୍ୱନିଁସୁଚକ୍ ବରନ୍‌ମାଲା ହଉଛେ ସେ ଭାସାର୍ ସମ୍‌ପତ୍‌ତି, ବାକି ଲିପିର୍ ବରନ୍‌ମାଲା ହଉଛେ ଭାସାର୍ ସମ୍‌ପତ୍‌ତି । ତାର୍ ମାନେଁ ଜେନ୍ ଭାସାକେ ଜେନ୍ ଲିପି ନଁ ଲେଖ୍‌ଲେଁ ବି ଚଲ୍‌ବା, ଲୁକେ ଜଦି ହେଁ ଟାକେ ହଁ ବଲ୍‌ବେ । ଗୁଟେ ଲିପି ଥିଁ ଅନେକ୍‌ଟା ଭାସାକେ ଲେଖ୍‌ବାର୍ ପରିଖ୍ୟାଟେ କରିଥିଲେ ସନ୍‌ଥ ବିନୋବା ବାଭେ(୫) । ତାକର୍ **ଗୀତା ପ୍ରବଚନ** ବହିକେ ଭାରତର୍ ପ୍ରାୟ୍ ସବୁ ଭାସା ଥିଁ ଅନୁବାଦ୍ କରିଁ କରିଁ ସେ ସବୁକେ ସେ ଦେବ୍‌ନାଗ୍ରି ଲିପି ଥିଁ ଛପାବାର୍ ହିସାବ୍ କରିଥିଲେ । ଦେବ୍‌ନାଗ୍ରି ଲିପି ଥିଁ ଉଡିଆ ଭାସାର୍ ଟା ଆମେଁ ଦେଖିଛୁଁ । ଇ ତାର୍ ଉଲଟିଆ ହେଲା ଗୁଟେ ଭାସାର୍ ବହିପତର୍ ଅନେକ୍ ଲିପି ଥିଁ ଲେଖ୍‌ବାର୍ ଟା । ଆମର୍ ଦେସର୍ ଆର୍‌ଜ ଗୋସ୍‌ଠିର୍ ଭାସାମାନ୍‌କର୍ ଆଇମାଁ ସଁସ୍କ୍ରୁତ୍ ଭାସାକେ ସନ୍‌ସାରର୍ ପ୍ରାୟ୍ ସବୁ ଲିପିର୍ ସାଢି ପିନ୍‌ହା ହଇଛେ ।

କହେସନ୍, ସମଲ୍‌ପୁରି-କୁସ୍‌ଲି ଭାସାକେ ଉଡିଆ ଲିପି ଥିଁ ଲେଖୁଥିବାର୍ ତକ୍ ଲୋକ୍ ତାହାକେ ଉଡିଆର୍ ଉପଭାସା ଆଏ ବଲିଁ କହୁଥିବେ । ଆରୁ ବି କହେସନ୍, ଜଦି ସମଲ୍‌ପୁରି-କୁସ୍‌ଲି ଗୁଟେ ବର୍‌କସ୍ ଅଲ୍‌ଗା ଭାସା ଆଏ ତାର୍

ଲିପିଟେ ବି ଥିବାର୍ କଥା । ଇ ଦୁହି ବିଚାର୍ ଠିକ୍ ନହେସେ । **ଗୁଟେ ଭାସାକେ ଅନେକ୍ ଲିପି ଥିଁ ଆରୁ ଅନେକ୍ ଭାସାକେ ଗୁଟେ ଲିପି ଥିଁ ଲେଖିଲେଁ ବି ଚଲ୍‌ବା** ବଲିଁ ଟିକେ ଆଗୋ ଆଲୋଚନାଁ କରାହଇଛେ ।

ଛତିସ୍‌ଗଡ୍ 'ଆରୁ' ଝାର୍‌ଖଁଣ୍ ନଁ ଜେନ୍‌ମାନ୍‌କର୍ ମାତୃଭାସା ସମଲ୍‌ପୁରି-କୁସ୍‌ଲି ଆଏ ଆରୁ ତାକର୍ ଜଦି ଉଡିଆ ଲିପି ଥିଁ ଲେଖିବାର୍ ଅଭ୍ୟାସ୍ ନେଇଁନଁ ହେଁମାନେଁ ଦେବ୍‌ନାଗ୍ରି ଲିପି ଥିଁ ଲେଖିଲେଁ ବି ଚଲ୍‌ବା । ଜେନ୍ତା ସଁସ୍କୃତ୍ ଭାସାକେ ଦେବ୍‌ନାଗ୍ରି, ଉଡିଆ, ବଙ୍ଗାଲି, ତେଲ୍‌ଗୁ ଆଦି ସବୁ ଲିପି ଥିଁ ଲେଖାଜାଏସି, ହେନ୍ତା ଜାହାକେ ଜେନ୍ ଟା ସୁବିଧା, ଉଡିଆ ହଉ କି ଦେବ୍‌ନାଗ୍ରି, ଜେନ୍ ଲିପି ଥିଁ ଆମର୍ ଭାସାକେ ଲେଖିଲେଁ ବି କିଛି ଫରକ୍ ନେଇଁ ପରେ । ତାର୍ ବାହାରେଁ ଆମେଁ ସଭେ ଇ ଦୁହି ଲିପିକେ ଭଲ୍ ଭାଁବେଁ ଜାନିଛୁଁ । ମନ୍‌କେ ଲାଗ୍‌ଲେଁ ବେଭାର୍ କରିପାରୁଁ ।

କେନ୍‌ସି ଭାସାକେ ନୁଆଁ କରିଁ ଲେଖିବାକେ ହେଲେଁ ତାର୍ ଲାଗିଁ ଲିପି ବଡ୍ କଥା ନହେସେ । ଅସଲ୍ କଥା ହଉଛେ ତାର୍ ଧ୍ୱନିଁଗ୍ରାମ୍ ଆରୁ ଉପଧ୍ୱନିଁମାନ୍‌କୁଁ ବିଚାର୍‌କେ ନେଇଁ କରିଁ ତାର୍ ଗୁଟେ ତାଲିକା ବନାବାର୍ ଟା । ଇ ଟା ହଉଛେ ସେ ଭାସାର୍ ଧ୍ୱନିଁଗ୍ରାମ୍-ସୁଚକ୍ ବରନିଁମାଲା(PHONEMIC INVENTORY)। ଜେନ୍ ଭାସାମାନ୍‌କର୍ ଲେଖିବାର୍ ପରମ୍ପରା ହଇସାଏଲାନିଁ ତାହାକେ ସହଜେଁ ବଦ୍‌ଲେଇଁ ନେଇଁ ହଏ । ବାକି ଜେନ୍ ଭାସାମାନ୍‌କେଁ ଲେଖିବାର୍ ଟା ମୁଲ୍ ହଇଛେ, କେନ୍ତା କରିଁ ଲେଖିଲେଁ ସବୁ ଦିଗୁଁ ଅଏନ୍ ହେବା, ତାର୍ ବିଚାର୍ କରାଜେଇପାରେ । ତେହିର୍ ଲାଗିଁ ଇ ଆଲୋଚନାଁ ।

ଉଡିଆ କି ଇଙ୍ଗ୍‌ଲିସ୍ ବାଗିର୍ ଗୁଟେ ଭାସା ଥିଁ ଲେଖିବାର୍ ଲାଗିଁ ବନାନ୍(SPELLING) ସିଖାଜାଏସି ଆରୁ ଲେଖାହଇଥିଲା ସବ୍‌ଦମାନ୍‌କୁଁ ପଢ୍‌ବାକେ ଫେର୍ ଉଚ୍‌ଚାରଣଁ (PRONUNCIATION) ସିଖାଜାଏସି । ଇଙ୍ଗ୍‌ଲିସ୍ ବାଗିର୍ ଭାସାମାନ୍‌କୁଁ ସିଖିବାକେ ଇ ବନାନ୍ ଆରୁ ଉଚ୍‌ଚାରଣଁ ସିଖିବାର୍ ଟା ବଢେଟେ ବୋଜ୍ ଆଏ । ଅନେକ୍ ଭାସା ଥିଁ ଇ ବନାନ୍ ସାଙ୍ଗେଁ ଉଚ୍‌ଚାରଣଁର୍ ମେଲ୍ ନେଇଁ ଥାଏ । ଉଡିଆ ଭାସାର୍ 'ଆଶ' 'ଆସ' ଆରୁ 'ଭାଷା' ଆଦି

ସବ୍‌ଦମାନ୍‌କର୍ ଲାଗିଁ ତିନ୍‌ଟା ଧ୍ୱନିଁସୁଚକ୍ ଚିନ୍‌ହାଁ [ଶ, ଷ, ସ] ବେଭାର୍ ହଉଥିଲେଁ ବି ହେଁମାନ୍‌କୁଁ ଉଚ୍‌ଚାରଣଁ କଲାବେଲ୍‌କେ ତେହିଁ କିଛି ଫରକ୍ ନେଇଁ ଥାଏ । ସେନ୍ତା ବରଗ୍ୟ 'ଜ' ଆରୁ ଅବରଗ୍ୟ 'ଯ'-ମାନ୍‌କୁଁ ଉଚ୍‌ଚାରଣଁ କଲାବେଲ୍‌କେ ବି ଫରକ୍ ନେଇଁ ଥାଏ । ଇଙ୍ଗ୍‌ଲିସ୍ ଭାସାର୍ ବନାନ୍ ଆରୁ ଉଚ୍‌ଚାରଣଁ ଥିଁ ଜେତ୍‌କି ଫରକ୍ ଜେ କହେଲେଁ ନେଇଁ ସରେ । BUT 'ବଟ୍' ହେଲା ବେଲ୍‌କେ PUT 'ପୁଟ୍' ହେସି । TO 'ଟୁ' ହେଲା ବେଲ୍‌କେ GO 'ଗଉ' । WOMAN 'ୱୁମନ୍' ହେଲା ବେଲ୍‌କେ WOMEN ହେବା 'ୱିମିନ୍' । ଲେଖ୍‌ଲା ବେଲ୍‌କେ SEW, SO ଦୁଇଟା ସବ୍‌ଦ; ଉଚ୍‌ଚାରଣଁ କଲାବେଲ୍‌କେ୍ ଗୁଟେ 'ସଉ' । ସେନ୍ତା RAIN, REIN, REIGN ସବଦ୍‌ମାନ୍‌କୁଁ [ rein ] 'ରେଇନ୍' ବଲିଁ ଉଚ୍‌ଚାରଣଁ କରାହେସି । ROUGH 'ରଫ୍' ହେସି, ବାକି ତାର୍ ଆଗୋ TH- ଲଗାଲେଁ (THROUGH) 'ଥ୍ରଫ୍' ନେଇଁ ହଏ, ହେସି 'ଥ୍ରୁ' । ଇ ବିଭ୍ରାଟ୍ ଲାଗିଁ ଇଙ୍ଗ୍‌ଲିସ୍ ଅବିଧାନ୍‌ମାନ୍‌କେଁ ସବ୍‌ଦର୍ ଅର୍ଥ ସାଙ୍ଗେଁ ତାର୍ ଉଚ୍‌ଚାରଣଁ ବି ଦିଆହଇଥିସି ।

ଇଙ୍ଗ୍‌ଲିସ୍ ଭାସାକେ ରୋମାନ୍ ଲିପି ଥିଁ ଲେଖାଜାଏସି । ଇ ଭାସାର୍ ଧ୍ୱନିଁଗ୍ରାମ୍ ହଉଛେ, ସ୍ୱର ୧୨ଟା, ଦୁଇଟିକିଆ ସ୍ୱର ୮ଟା ଆରୁ ବ୍ୟଞ୍ଜନଁ ୨୪ଟା । ଇଙ୍ଗ୍‌ଲିସ୍ ଭାସାର୍ ଇ ୪୪ଟା ଧ୍ୱନିଁଗ୍ରାମ୍ ଲାଗିଁ ରୋମାନ୍ ଲିପି ଥିଁ ଜଦି ୪୪ଟା ବରନଁ ଥିତା, ବଏଲେଁ ଇ ବନାନ୍ ଆରୁ ଉଚ୍‌ଚାରଣଁ ଭିତ୍‌ରେଁ ତଫାତ୍ ନେଇଁ ରହେତା । ରୋମାନ୍ ଲିପିର୍ ଛବିସ୍‌ଟା ବରନଁ ଥିଁ ଇ ଭାସାକେ ଲେଖାହଉଛେ ବଲିଁ ତାର୍ ସବ୍‌ଦମାନ୍‌କର୍ ଉଚ୍‌ଚାରଣଁ ଲାଗିଁ ଗୁଟେ ଧ୍ୱନିଁସୁଚକ୍ ବରନଁମାଲା ନୁଁ ବତିସ୍‌ଟା ବରନଁ ଆରୁ ଧ୍ୱନିଁସୁଚନାଁର୍ ଲାଗିଁ କିଛି ଚିନ୍‌ହାଁ ନେଇଁ କରିଁ ଇ ଭାସାର୍ ସବ୍‌ଦମାନ୍‌କର୍ ଉଚ୍‌ଚାରଣଁ ଲେଖାହେସି ।

ପୃଥିବିର୍ ସବୁ ଭାସାକେ ଠିକ୍ ଭାବେଁ ଲେଖିଁ ହେବା ବଲିଁ ଆନ୍ତର୍ଜାତିକ୍ ଧ୍ୱନିଁତତ୍ତ୍ୱବିତ୍ ସଂଘ ୧୮୮୯ ନଁ ଗୁଟେ ଧ୍ୱନିଁସୁଚକ୍ ବରନଁମାଲା (INTERNATIONAL PHONETIC ALPHABET) ଠିକ୍ କଲେ । ତାର୍ ସାଙ୍ଗେଁ ଧ୍ୱନିଁର୍ ବିସେସ୍ ସୁଚ୍‌ନାଁ ଦେବାକେ ଡାଇକ୍ରିଟିକ୍ (DIACRITIC) ଚିନ୍‌ହାଁ ସବୁ ବି ଠିକ୍ କଲେ । ଇ ସବୁ ବେଭାର୍ କରିଁ ଇଙ୍ଗ୍‌ଲିସ୍ ଭାସାକେ ଲେଖ୍‌ଲେଁ ତାର୍ ସବ୍‌ଦମାନ୍‌କର୍

ଭୁଲ୍ ବନାନ୍(SPELLING MISTAKE) କି ଭୁଲ୍ ଉଚ୍‌ଚାରଣେଁ(DEFECTIVE PRONUNCIATION) ବଲିଁ କଥାଟେ ନେଇଁ ହେତା । ସମ୍‌କିର୍ ଲାଗିଁ ବଡା ସୁବିଧା ହେତା । ବାକି ହେନ୍ତା ନେଇଁ ହଏ । ଲେଖାପଢାର୍ ପରମ୍‌ପରା ଏନ୍ତା ଗୁଟେ ମଜ୍‌ଭୁତ୍ କାଁଥି ଜେ ତାହାକେ ସହଜେଁ ଭାଙ୍ଗିଁ ନେଇଁ ହଏ । ପ୍ରଫେସର୍ ହକିଟ୍ କହୁଛନ୍, "…. for some reason people are more conservative about writing systems than about any other human institution that can be named - even religion ."(୬) । ଅର୍ଥାତ୍ ଲେଖିବାର୍ ଧାରା ଥିଁ ଲୋକ୍ ଜେତ୍‌ତେତେ ରୁଢିବାଦି ଆନ୍ । ଧରମ୍‌କରମ୍ ଥିଁ ପଛେ ସଁସ୍‌କାର୍ ଆନିଁ ହେବା ହେଁ ଥିଁ ସହଜେଁ ନେଇଁ ହଏ । ତେହିର୍ ଲାଗିଁ ଇ କଥା ବାରୁଁବାର୍ କହେବାକେ ପରୁଛେ ଜେ ଆମର୍ ଭାସା ଥିଁ ଇହାଦେ ଆମେଁ ଜବର୍ ଲେଖାଲେଖି କରୁଛୁଁ । ଆମର୍ ଲେଖାପଢାର୍ ଗୁଟେ ପରମ୍‌ପରା ବନ୍‌ତେଇଲ୍ ଜଉଛେ । ଆମ୍‌କୁଁ ବିଚାର୍ କର୍‌ବାକେ ପର୍‌ବା ଜେ ଦୁସ୍‌ରା ଦୁସ୍‌ରା ଭାସାମାନ୍‌କେଁ ଲେଖିବାର୍ ଥିଁ ଆରୁ ଲେଖାକେ ପଢ୍‌ଭାର୍ ଥିଁ ଜେନ୍ ଅସୁବିଧା ସବୁ ହଇଛେ ହେଁ ସବୁ ଆମର୍ ଭାସା ଥିଁ ନେଇଁ ହଉ ।

ଇଙ୍ଗ୍‌ଲିସ୍ ଭାସାର୍ ଲିପି, ବରନଁମାଲା ଆରୁ ତାର୍ ସ୍ୱର-ବ୍ୟଞ୍ଜନଁ ଇତ୍ୟାଦି ଧ୍ୱନିଁମାନ୍‌କର୍ ବିସେ ନଁ ଅଲପ୍ ଟିକେ ଜାନ୍‌ଲା ଉତାରୁଁ ଦେଖୁଁ ଆମର୍ ଉଡିଆ ଥିଁ ଇ ସବୁ କେନ୍ତା ହଉଛେ । ଠିକ୍ ହଉଛେ କି ଇ ନଁ ବି କିଛି ବିଭ୍ରାଟ୍ ହଉଛେ ।

ଉଡିଆ ଲିପିର୍ ମାଁ ହଉଛେ ଦେବ୍‌ନାଗରି, ଦେବ୍‌ନାଗରିର୍ ମାଁ ସିଦ୍‌ଧମାତୃକା, ସିଦ୍‌ଧମାତୃକାର୍ ମାଁ ଖରୋସ୍‌ଠି, ଖରୋସ୍‌ଠିର୍ ମାଁ ବ୍ରାହ୍ମିଁ ଆରୁ ବ୍ରାହ୍ମିଁର୍ ମାଁ ହଉଛେ ଆରାମାଇକ୍(ARAMAIC) ବଲିଁ ପନ୍‌ଡିତ୍‌ମାନେଁ ଠିକ୍ କରିଛନ୍ (୭) । ଫେର୍ ବ୍ରାହ୍ମିଁ ଲିପି ନୁଁ ଦେବ୍‌ନାଗରି ବାଟେଁ ଆସିଁ କରିଁ ଭାରତର୍ ସବୁ ପ୍ରାକୃତ୍ ଭାସାମାନ୍‌କର୍ ଲିପି, ଜେନ୍‌ତା କି ଉଡିଆ, ବଙ୍ଗାଲି, ଗୁଜ୍‌ରାଟି, ମରାଠି ଇତ୍ୟାଦି ଧିରେ ଧିରେ ତାକର୍ ଇହାଦେର୍ ଚେହେରା ପାଇଛନ୍ । ଇ ସବୁ ଲିପି ଥିଁ ସଁସ୍‌କୃତ୍ ଭାସାର୍ ପରତି ଧ୍ୱନିଁଗ୍ରାମର୍ ଲାଗିଁ ଗୁଟେ ଗୁଟେ ଚିନ୍‌ହାଁ ଅଛେ । ବାକି ସଁସ୍‌କୃତ୍ ଆରୁ ପାଲି ନୁଁ ପ୍ରାକୃତ୍-ଅପଭ୍ରନ୍‌ସ ବାଟେଁ ଆସିଁ କରିଁ ଇହାଦେର୍ ଭାସା ହିସାବେଁ ବେଭାର୍ ହେଲା

ବେଲ୍‌କେ ଭାସାମାନ୍‌କର୍ ଧ୍ୱନିଁଗ୍ରାମ୍ ଥିଁ ଅନେକ୍ ପରିବର୍ତନ୍ ହେଲାନିଁ । ସନ୍‌ଥ ତୁଲ୍‌ସି ଦାସ୍‌କର୍ **ରାମ୍ ଚରିତ୍ ମାନସର୍** ଦୁଇପଦ୍ ଦେଖୁଁ :

୧ : କୋସଲେସ ସୁତ ଲଛିମନ ରାମା ।
କାଲହୁ ଜୀତି ସକହିଁ ସଂଗ୍ରାମା ॥ (ରା.ଚ.ମା.କି. ୭/୨୯)

୨ : ଛିତି ଜଲ ପାଓ୍ୱକ ଗଗନ ସମୀରା ।
ପଂଚ ରଚିତ ଅତି ଅଧମ ସରୀରା ॥ (ରା.ଚ.ମା.କି. ୧୧/୪)

ଇ ନଁ ସଁସ୍‌କ୍ରୁତ୍ ଭାସାର୍ ଦୁଇଟା ଧ୍ୱନି [କ୍ଷ] ଆରୁ [ଶ] ଅବଧି ଭାସାକେ ଆଏଲା ବେଲ୍‌କେ [ଛ]ଆରୁ [ସ] ହେଲାନିଁ ବଲିଁ ମହାଗ୍ୟାନି ସନ୍‌ଥ ତୁଲ୍‌ସି ଦାସ୍ (୧୪୯୭-୧୫୭୩) ଜାନ୍‌ଲେ ଆରୁ ସେନ୍ତା ବେଭାର୍ କଲେ । ସେ ଟା ଫେର୍ ପାନ୍‌ସ ବର୍‌ସର୍ ଆଗୋ (୮) ।

| ସଁସ୍‌କ୍ରୁତ୍ | ଅବଧି |
|---|---|
| କୋଶଲ | କୋସଲ |
| ଈଶ | ଈସ |
| ଶରୀର | ସରୀରା |
| ଲକ୍ଷ୍ମଣ | ଲଛିମନ(ଲଛମନ) |
| କ୍ଷିତି | ଛିତି ଇତ୍ୟାଦି । |

ଇ ପରିବର୍‌ତନ୍ ଭାସାତତ୍ୱର୍ ଦୁଇଟା ନିଅମ୍ ଅନ୍‌ସାରେଁ ହଉଛେ, ସରଲିକରଣଁ(SIMPLIFICATION)(୯) ଆରୁ ସମ୍ମିସ୍ରଣଁ (ASSIMILA-TION)(୧୦) । କନ୍‌ଠ-ତାଲବ୍ୟ [କ୍ଷ] ଆରୁ [ଶ] ଧ୍ୱନିଁମାନ୍‌କୁଁ ଉଚ୍‌ଚାରଣଁ କର୍‌ବାର୍ ନୁଁ ଦାଁତ୍‌ବୁନ୍ ନିର୍ ଧ୍ୱନି [ଛ] ଆରୁ [ସ] କହେବାର୍ ଟା ସହଜ୍ ଆଏ, ସରଲ୍ ଆଏ । ତେହିର୍ ଲାଗିଁ କସ୍‌ଟେଁ କେନ୍‌ମାନ୍‌କୁଁ କହିଁ ହଉଥିଲା, ସେମାନେଁ ସହଜେଁ କହିଁହେବାର୍ ନିଜର୍ ବାଗିର୍ ଧ୍ୱନିଁମାନ୍‌କେଁ ମିସିଁଙ୍ଗଲେ । ଆମର୍ ଭାସା ଥିଁ ଇ ଟଁଟି ନଁ ବାହାରୁଥିବାର୍ [କ୍ + ଷ = କ୍ଷ] ଦୁଇଟିକିଆ ବ୍ୟଞ୍ଜନଁ ଧ୍ୱନି ତାଲୁ ନିର୍

[ଖ୍] ହେସି, ନେଇଁ ତ [ଖ୍ୟ] ହେସି ।

| ସଁସ୍କୃତ୍ | ସମଲପୁରି-କୁସ୍‌ଲି |
|---|---|
| କ୍ଷାର | ଖାର୍ |
| ସାକ୍ଷ | ସାଖି |
| ଯକ୍ଷ | ଜଖ୍ୟ , |
| କ୍ଷମା | ଖ୍ୟମାଁ |
| ପରୀକ୍ଷା | ପରିଖ୍ୟା |
| ଶୁକ୍ଳପକ୍ଷେ | ସୁକଲ୍ ପଖେଁ / (ଉଜୁଲ୍ ପଖେଁ) |
| | ଇତ୍ୟାଦି । |

ଆସୁଁ ଆମର୍ ଅସଲ୍ କଥା ନିକେ । ଉଡିଆ ଭାସା ନିକେ । ଉଡିଆ ଭାସା (ଭାସା ବଏଲେଁ ଇ ନଁ ମୁହେଁ କହୁଥିବାର୍ ଭାସା ଆଏ) ଥିଁ ସଁସ୍କୃତର୍ ହ୍ରସ୍ୱ-ଦିର୍‌ଘ ଧ୍ୱନିଁଗ୍ରାମ୍‌ମାନେଁ ମିସିଁ କରିଁ ଗୁଟେ ହେଲେନଁ । [ଶ୍], [ଷ୍] ଆରୁ [ସ୍ ]-ମାନ୍‌କର୍ ଉଚ୍‌ଚାରଣଁ ଥିଁ କିଛି ଫରକ୍ ନେଇନଁ । କହେଲା ବେଲ୍‌କେ ଛଅଟା ସ୍ୱରଧ୍ୱନିଁ ଆରୁ ଲେଖ୍‌ଲା ବେଲ୍‌କେ ଏଗାରଟା ସ୍ୱରବର୍‌ନଁ । କହେଲା ବେଲ୍‌କେ ଗୁଟେ [ସ୍] ଆରୁ ଲେଖ୍‌ଲା ବେଲ୍‌କେ ତିନ୍‌ଟା ବର୍‌ନଁ (୧୧) । ତାର୍ ଅର୍ଥ, ଉଡିଆ ଭାସା ଥିଁ ଜେତ୍‌କିଟା ଧ୍ୱନିଁଗ୍ରାମ୍ ଅଛେ, ଉଡିଆ ଲେଖାହଉଛେ ସେ ନୁଁ ଅଏଦ୍‌କା ବର୍‌ନଁମାନ୍‌କର୍ ଦୁଆରା (୧୨) । ତେହିର୍ ଲାଗିଁ ଉଡିଆ ଥିଁ ବର୍‌ନାଁସୁଦ୍‌ଧି ବଲିଁ କଥାଟେ ଅଛେ । ଇଙ୍ଗ୍‌ଲିସ୍ ଭାସାର୍ ଧ୍ୱନିଁଗ୍ରାମ୍ (ସ୍ୱର ୧୨ + ଦୁଇଟିକିଆ ସ୍ୱର ୮ + ବ୍ୟଞ୍ଜନଁ ୨୪ = ୪୪) ସେ ଭାସା ବେଭାର୍ କରୁଥିବାର୍ ରୋମାନ୍ ଲିପିର୍ ବର୍‌ନଁମାଲା ନୁଁ ଜହ ଅଛେ । ତେହିର୍ ଲାଗିଁ ସେ ନଁ ବି ବର୍‌ନାଁସୁଦ୍‌ଧି ହଉଛେ । ଗୁଟେ ଭାସା ଥିଁ ଜେତ୍‌କିଟା ଧ୍ୱନିଁଗ୍ରାମ୍ ବେଭାର୍ ହଉଛେ, ଜଦି ସେତ୍‌କିଟା ଚିନ୍‌ହାଁ(ବର୍‌ନଁ) ନେଇଁ କରିଁ ତାହାକେ ଲେଖାଜାଏତା ବଏଲେଁ ଇ ଅସୁବିଧା ନେଇଁ ହେତା । ହଜାରେ( ? ) ବଛର୍ ଆଗୋ ନୁଁ ଲୁକେ ଜଦି 'ଇ, ଉ, ର, ଦିର୍ଘରୁ,

ଌ, ଦିର୍ଘଲୁ, ଙ, ଞ, ଯ, ଶ, ଷ, ଐ, ଔ, କ୍ଷ' ବର୍‌ନଁମାନ୍‌କୁଁ ସଁସ୍‌କ୍ରୁତ୍ ଭାସା ଥିଁ ବେଭାର୍ କର୍‌ବାର୍ ଲାଗିଁ ସିଖିଥିତେ ଆରୁ ଉଡିଆ ଭାସାର୍ ଲାଗିଁ ଦର୍‌କାର୍ ନହେସେ ବଲିଁ (୧୩) ଉଡିଆ ଥିଁ ବେଭାର୍ ନେଇଁ କରିଥିତେ ବଏଲେଁ ଉଡିଆ ଭାସା ଥିଁ ବର୍‌ନାଁସୁଦ୍‌ଧି ବଲିଁ କଥାଟେ ନେଇଁ ଥିତା । ବାକି ହଜାରେ ବରସ୍ ହେଲାନଁ ଜେନ୍ ଟା ଚଲିଁଅଉଛେ, ହେଁ ଟା ସହଜେଁ ନେଇଁ ବଦ୍‌ଲେ । ସୁବିଧା ହଉ କି ଅସୁବିଧା ହଉ, ସୋଜ୍ ହେଲେଁ 'ଇ ଟା ହେବା କି ସେ ଟା ହେବା ଗା' ବଲିଁ ଭାବିଁ ଭାବିଁ ସମିଆ ପଛେ ବର୍‌ବାଦ୍ ହଉ, ଉଡିଆ ଭାସାର୍ ଲାଗିଁ ଅତ୍‌ତିରିସ୍‌ଟା ଚିନ୍‌ହାଁ (ଗଗନେନ୍ଦ୍ର ନାଥ ଦାସ, ୧୯୮୨) ଦର୍‌କାର୍ ଥିଲେଁ ବି ଅଣନ୍‌ଟାସ୍‌ଟା ଚିନ୍‌ହାଁ ବେଭାର୍ କରିଁ ଘାଁଟିଁ ହଉଥିବାକେ ହିଁ ପର୍‌ବା । କାରନ୍ ହଜାରେ ବର୍‌ସର୍ ଲେଖ୍‌ବାର୍ ପରମ୍‌ପରାଟେ ଭାଙ୍ଗ୍‌ବାର୍ ଟା ପାଖାପାଖି ଅସମ୍‌ଭବ୍ ଆଏ ।

ଇ ନଁ ଗୁଟେ ଦୁଇଟା କଥାର୍ ବିଚାର୍ କରୁଁ । ପହେଲା କଥା ହେଲା, ଉଡିଆ ନଁ ଲେଖ୍‌ଲା ବେଲ୍‌କେ 'ଶତ' ଆରୁ 'ସତ', 'ଶପ୍ତ' ଆରୁ 'ସପ୍ତ', 'ଶଙ୍କର' ଆରୁ 'ସଙ୍କର' ଇତ୍ୟାଦି ସବ୍‌ଦ ଜୁଡାମାନ୍‌କେଁ ତାକର୍ ଅର୍ଥକେ ନେଇଁ କରିଁ ଜେନ୍ ତଫାତ୍ ଅଛେ, ସବୁ ଠାନେଁ ଉଚ୍‌ଚାରଣଁ କଲାବେଲ୍‌କେ ଦନ୍ତ୍ୟ 'ସ' କରାହଉଛେ ବଲିଁ ଲେଖ୍‌ଲାବେଲ୍‌କେ ବି ଜଦି ସବୁ ଠାନେଁ 'ସ' ଲେଖାହେବା ବଏଲେଁ ଲୁକେ ନେଇଁ ବଲିପାରନ୍ । ବାକି ମୁଲୁଁ ଜଦି ସେନ୍ତା ଲେଖାହଇଁଅଉଥିତା ବଏଲେଁ ବଡା ସୁବିଧା ହଇଥିତା । କାରନ୍ ସବ୍‌ଦମାନ୍‌କର୍ ଅନେକ୍ ଅର୍ଥ ଥିସି । 'ଶଙ୍କର' ସବ୍‌ଦର୍ ଅର୍ଥ 'ମହାଦେବ୍' ଆରୁ 'ପାରା' । 'ସଙ୍କର' ସବ୍‌ଦର୍ ଅର୍ଥ 'ମେସ୍‌ରି'(ମିଶ୍ରିତ) । ସବୁ ନଁ 'ସ' ଲେଖୁଥିଲେଁ 'ସଙ୍କର' ସବ୍‌ଦର୍ ଅର୍ଥ ଗୁଟେ ନେଇଁ ହଇଁ କରିଁ ତିନ୍‌ଟା ହେତା । ରିତିଜୁଗର୍ କବିମାନ୍‌କୁଁ ସବ୍‌ଦ କସ୍‌ରତ୍ (ଯମକ) କର୍‌ବାକେ ଆରୁ ସୁବିଧା ହଇଥିତା । ଜେନ୍ତା, / ଦେଖରେ ନଳିନି, ନଳିନୀ ନଳିନୀରେ ପୂରିତ / ଭ୍ରମନ୍ତି ଭ୍ରମରେ ଭ୍ରମରେ ଭ୍ରମରେ ଏ ଶୋଭିତ / ଇତ୍ୟାଦି ନଁ ଭଞ୍ଜ କରିଛନ୍ (୧୪) ।

ସ୍ୱରଧ୍ୱନିଁ ଜୁଡାଟେ ନେଇଁ କରିଁ ଆରୁ ଗୁଟେ କଥାର୍ ବିଚାର୍ କରୁଁ । 'ପରୀ/ପରି'- ଇ ସବ୍‌ଦ ଥିଁ ଜଦି ଦିର୍ଘଇ ଅଛେ, ବଏଲେଁ ତାର୍ ଅର୍ଥ ସର୍ଗର୍

ଅପ୍‌ସରା । ଆରୁ ଜଦି ହ୍ରସ୍ୱଇ ଅଛେ, ହେଁ ଟା ତୁଲନାତ୍ମକ ଅବ୍ୟୟ । /ପରୀ-ରାଇଜର କନ୍ୟାମାନେ ହୁଏତ କଲେଜର ପ୍ରଥମ ବର୍ଷର ଝିଅମାନଙ୍କ ପରି/ । ଇ ଉଡିଆ ବାକ୍ୟର୍ ପହେଲା ଆରୁ ସେସ୍ ପଦ ଦୁଇଟାକେ ଦେଖୁଁ । ପହେଲା ପଦେଁ ଦିର୍ଘଇ ଆରୁ ସେସର୍ ପଦେଁ ହ୍ରସ୍ୱଇ ଥିଲେଁ ବି ହେଁମାନ୍‌କର୍ ଉଚ୍‌ଚାରଣେଁ ଥିଁ କିଛି ଫରକ୍ ନେଇଁନାଁ । ସବ୍‌ଦମାନ୍‌କେଁ ଜେନ୍ ଧ୍ୱନିଁଗ୍ରାମ୍‌ଟେ ଥିସି କି ଧ୍ୱନିଁଗ୍ରାମ୍‌ମାନେଁ ଥିସନ୍ , ହେନ୍ତେହି ହେଁମାନ୍‌କର୍ କିଛି ଅର୍ଥ ନେଇଁଥାଏ । ଜେନ୍ତା /ପରି/ ସବ୍‌ଦ ଥିଁ ଚାଏର୍ ଟା ଧ୍ୱନିଁଗ୍ରାମ୍ [ପ୍-ଅ-ର୍-ଇ] ଅଛନ୍ । ହେଁମାନ୍‌କୁଁ ଗୁଟେ ଗୁଟେ କରିଁ [ପ୍], [ଅ], [ର୍], [ଇ] କହେଲେଁ( ?) କି ଲେଖିଲେଁ ତାକର୍ କିଛି ଅର୍ଥ ନେଇଁ ଥାଏ । ଜେତେବେଳେଁ ଉଡିଆ ଭାସାର୍ ଧ୍ୱନିଁତତ୍ୱର୍ ନିଅମ୍ ଅନ୍‌ସାରେଁ ହେଁମାନ୍‌କୁଁ ସୁନ୍‌ବାକେ ମିଲ୍‌ସି କି ଲେଖାହଇଥିଲେଁ ଦେଖିବାକେ ମିଲ୍‌ସି, ତେହେଲୁଁ ଜେଇଁ ତାକର୍ ଅର୍ଥ ଆଏସି । ଇ ଟା ଗଲା ସବ୍‌ଦ ତିଆରିର୍ କଥା । ଆମେଁ ହରୁଁ ହର୍‌ଦମ୍ ଜେନ୍ କଥା ହଉଛୁଁ, ହେଁ ଟା ବାକ୍ୟମାନ୍‌କର୍ ଦୁଆରା ଆଏ । ଏନ୍ତା କି /ହାଁ/, /ନେଇଁ/, /କାଁଣାଁ/, /କିଏ/ ବାଗିର୍ ଏଖେଇ ଗୁଟେ ସବ୍‌ଦ ବି ବାକ୍ୟଟେ ହଇପାରେ । ସବ୍‌ଦମାନେଁ ଗୁଟେ ବାକ୍ୟ ଥିଁ ନାଁନାଁ କାମ୍ କର୍‌ସନ୍ । କର୍ତା, କର୍ମ, କରଣେଁ ଇତ୍ୟାଦି ଭାବେଁ ବେଭାର୍ ହେଲେଁ ତାହାକୁଁ ବିସେସ୍ୟ ପଦ ବଲ୍‌ସନ୍ । ଜେନ୍ ପଦମାନେଁ ବିସେସ୍ୟ ପଦର୍ ଗୁଣେଁ, ଅବସ୍ଥା, ସଙ୍ଖ୍ୟା ଆଦିର୍ ସୁଚନାଁ ଦେସନ୍ ତାହାକୁଁ ବିସେସଣେଁ ପଦ ବଲିଁ କହେସନ୍ । ବିସେସ୍ୟ ପଦର୍ ବଦ୍‌ଲା ଜେନ୍ ପଦ ବେଭାର୍ ହେସି ସେ ହଉଛେ ସର୍ବନାମ୍ । ସେନ୍ତା ବାକି ପଦମାନେଁ ବି ବାକ୍ୟ ଥିଁ ଗୁଟେ ଗୁଟେ କାମ୍ କର୍‌ସନ୍ । ବାକ୍ୟର୍ ପଦମାନ୍‌କର୍ କାମ୍‌ମାନ୍‌କୁଁ ଏକା ସାଙ୍ଗେଁ ବିଚାର୍ କରିଁ ଆମେଁ କଥା ଟା ବୁଝି ପାର୍‌ସୁଁ । /ପରୀରାଇଜର କନ୍ୟାମାନେ/ ବାକ୍ୟାନ୍‌ସ ଥିଁ /କନ୍ୟାମାନେ/ ହେଲା ପୁରା ବାକ୍ୟର୍ କର୍ତା । ତାର୍ ସମ୍ବନ୍‌ଧ ପଦ ଆଏ /ପରୀରାଇଜର/ । ଇ ସବ୍‌ଦ ଫେର୍ /ପରୀଙ୍କ ରାଇଜର = ପରୀରାଇଜର, ଷଷ୍ଠୀତତ୍‌ପୁରୁଷ/ ଭାବେଁ ଅଛେ । ବାକ୍ୟ ଭିତ୍‌ରେଁ ଇ ଜେନ୍ ଏତ୍‌କିଟେ ସଙ୍ଗଠନ୍ ଅଛେ, ସେ ଟା ଅର୍ଥକେ ଇପାକ୍-ସେପାକ୍ ହେବାକେ ନେଇଁ ଦିଏ । ଜେହେତୁ କହେଲା ବେଲ୍‌କେ /ପରୀ/ ଆରୁ /ପରି/ ପଦମାନ୍‌କୁଁ ଆମେଁ ଅଲ୍‌ଗା ଅଲ୍‌ଗା ଉଚ୍‌ଚାରଣେଁ ନେଇଁ କରୁଁ, ଲେଖିଲା

ବେଲ୍‌କେ ବି ସେନ୍‌ତା ଗୁଟେ ରକମ୍ ଲେଖ୍‌ଲେଁ କିଛି ଅସୁବିଧା ନେଇଁ ହଏ ।

ଇ ନ଼ଁ ପ୍ରସ୍‌ନ଼ଁ ହେଲା, ଜେନ୍ କଥା ଉଡିଆ ଭାସାର୍ ଲାଗିଁ ଠିକ୍ ନହେସେ, ସେ ଟା କାଣ୍ଡେଁ କରାଗଲା ? ହେଁ ବାକ୍ୟର୍ ପହେଲା ପଦକେ ବି /ପରି/ ନେଇଁ ଲେଖିଁ କରିଁ /ପରୀ/ କାଣ୍ଡେଁ ଲେଖାଗଲା ? ଇତାର୍ ସାଙ୍ଗେଁ ଆରୁ ଗୁତାଦୁ ଉଦାହରଣଁ ନଉଁ । ଉଡିଆ ଥିଁ /ସାନ୍ତି/ କହେସନ୍, /ଶାନ୍ତି/ କାଣ୍ଡେଁ ଲେଖାହେସି ? /ସିତାଦେବି/ ନେଇଁ ଲେଖିଁ କରିଁ /ସୀତାଦେବୀ/ କାଣ୍ଡେଁ ଲେଖାହେସି ? ଇତାର୍ ଉତ୍‌ତର୍ ହେଲା, ଜେହେତୁ ସଁସ୍‌କ୍ରୁତ୍ ନ଼ଁ ହେନ୍ତା ଲେଖାହେସି । ଇ ଥିର୍ ଅସଲ୍ କଥା ଆମେଁ ଭୁଲିଁଜାଏସୁଁ ଜେ ସଁସ୍‌କ୍ରୁତ୍ ନ଼ଁ ଜେନ୍ତା କହେସନ୍ ହେନ୍ତା ଲେକ୍‌ସନ୍ । ସଁସ୍‌କ୍ରୁତ୍ ଥିଁ ସ୍ୱରଧ୍ୱନିଁର୍ ଲମ୍-ବୁଠି(LONG-SHORT) ତଫାତ୍ ଅଛେ, ବାକି ଉଡିଆ ଥିଁ ନେଇଁନ଼ଁ (୧୫) ।

ତ, ଏନ୍ତା କହେଲା ବେଲ୍‌କେ ପାଖେ ଆରୁ ଲେଖ୍‌ଲା ବେଲ୍‌କେ ଆରୁ ପାଖେ କର୍‌ବାର୍ ଟା ଭାସାର୍ ଲାଗିଁ ଗୁଟେ ଅଦର୍‌କାରି ବୋଜ୍ ଆଏ । ଇ ଅଦର୍‌କାରି ଆରୁ ଅଜୁକ୍ତିକର କଥାଟେ ସିଖ୍‌ବାକେ ସମିଆ ଦେବାର୍ ଟା ଆରୁ ଗୁଟେ ନକ୍‌ସାନ୍ ଆଏ ।

ସବୁ ବେଲେଁ ସବୁ କଥାକେ ଆମେଁ ସହଜ୍ ଆରୁ ସରଲ୍ କର୍‌ବାକେ ମନ୍ କର୍‌ସୁଁ । ସହଜ୍ ଆରୁ ସରଲ୍ କର୍‌ବାର୍ ଟା ଠିକ୍ ଆଏ ବଲିଁ ସଭେ କହେସନ୍ । ତେହିର୍ ଲାଗିଁ ସମଲ୍‌ପୁରି-କୁସ୍‌ଲି ଥିଁ ଲେଖ୍‌ଲା ବେଲ୍‌କେ ଆମେଁ ଜେନ୍‌ତା କହେସୁଁ ସେନ୍‌ତା ଜଦି ଲେଖି ପାର୍‌ତାଁ, ବଏଲେଁ ଆମର୍ ଲେଖ୍‌ବାର୍ ପରମ୍‌ପରା ସହଜ୍, ସରଲ୍, ନିର୍‌ଭୁଲ୍ ଆରୁ ଜୁକ୍‌ତିଜୁକ୍ତ ହେତା । ତାର୍ ବାହାରେଁ /ଶ/ କି /ଷ/ ଲେଖିଁ କରିଁ /ସ/ ବଲବାର୍ ଥିଁ, /ଯ/ ଲେଖିଁ କରିଁ /ଜ/ ବଲ୍‌ବାର୍ ଥିଁ, /କ୍ଷ/ ଲେଖିଁ କରିଁ /ଖ୍ୟ/ ବଲ୍‌ବାର୍ ଥିଁ ଲାଭ କାଣାଁ ବା ହଇପାରେ ? ଖାଲି ଗୁଟେ ଅନ୍‌ଧ ଭାବେଁ ସଁସ୍‌କ୍ରୁତ୍ ଆରୁ ଉଡିଆ ଥିଁ ହେନ୍ତା ହେସି ବଲିଁ ଆମେଁ ବି ହେନ୍ତା କର୍‌ମାଁ ବଏଲେଁ, ନିଜର୍ ମାଁକେ, ଆଇବୁଢ଼ି କି ବଡ୍‌ଖାମାଁ ଜେନ୍ତା କରୁଛନ୍, ତୁଇଁ ବି ହେନ୍ତା କର୍ ବଲିଁ ବାଧ୍ୟ କର୍‌ବାର୍ ସାଙ୍ଗେଁ ସମାନ୍ ହେବା ।

ଇହାଦେ ଆମର୍ ରାଏଜର୍ ଜେନ୍ ଏଗାରଟା ଜିଲା ନଁ ଆମେଁ ଆମର୍ ନିତିଦିନିଆଁ କାର୍-କାର୍‌ବାର୍ ଲାଗିଁ ଜେନ୍ ଭାସା ଟାକ ବେଭାର୍ କରୁଛୁଁ ସେ ଟା ଗୁଟେ କିସ୍‌ମର୍ ନହେସେ । ପର୍‌ତି ଜିଲାର୍ କହେବାର୍ ଢଙ୍ଗ୍ ଅଲଗ୍ ଅଲଗ୍ ହେଲେଁ ବି ସେମାନ୍‌କର୍ ଧ୍ୱନିଁତତ୍ୱ ଗୁଟେ ଆଏ । ଧ୍ୱନିଁଗ୍ରାମ୍‌ମାନ୍‌କର୍ ତାଲିକା (PHONE-MIC INVENTORY) ଆରୁ ସେମାନ୍‌କର୍ ସଙ୍ଗଠନ୍ (STRUCTURE) ସବୁ ଠାନେଁ ଗୁଟେ ନିଅମ୍ ଥିଁ ଗୁଁଥା ଆଏ । ଭିନ୍ ଭିନ୍ ଠାନେଁ ନାସ୍ତିସୁଚକ୍ ଅବ୍ୟୟ /ନିଁ, ନେଁ, ନେଇଁ, ନାଇଁ, ନହେ, ନିଁସେ, ନହେସେ/ ଇତ୍ୟାଦି କେତେ ରକମ୍ ବେଭାର୍ ହଉଛେ । ଆପଣ ଠିକ୍ ଭାବେଁ ସୁନ୍‌ବାର୍ ଲୋକ୍ ହଇଥିଲେଁ, ଝନ୍‌କର୍ ଇ ନାସ୍ତିସୁଚକ୍ ବେଭାର୍ ନୁଁ କହିଁନେଇପାର୍‌ବେ କିଏ କେନ୍ ଠାନୁଁ ଆସିଛନ୍ । ଇ ପ୍ରତ୍ୟେକ୍ ସବ୍‌ଦ ହଉଛେ ଗୁଟେ ସବ୍‌ଦର୍ ବିକଲ୍‌ପ । ସେନ୍ତା /ଆମର୍ ~ ହାମର୍, ଆମେଁ ~ ହାମେଁ, ମତେ ~ ମକେ, ତତେ ~ ତକେ, ବାଇ ~ ବେଇ, ପାଇ ~ ପେଇ,

ନୁଆଁଖାଇ ~ ନୁଆଁଖେଇ, ଡାଲ୍‌ଖାଇ ~ ଡାଲ୍‌ଖେଇ/ ଇତ୍ୟାଦି ବିକଲ୍‌ପ ଜୁଡି ଆମର୍ ଭାସାର୍ ଅନେକ୍ କିସମ୍ (VARIETY) ଅଛେ ବଲିଁ କହୁଛେ । **ଗୁଟେ ଭାସା ଥିଁ ଅନେକ୍ କିସମ୍ ଥିବାର୍ ଟା ସେ ଭାସାର୍ ବିସ୍ତାର(EXTENSION), ଆଗ୍‌କେ ଆଗ୍‌କେ ବଢୁଥିବାର୍ ସୁଚନାଁ(SIGN OF GROWTH) ଆରୁ ତାର୍ ଭାସାସମ୍‌ପଦର୍ ପ୍ରମାଣ୍ ଆଏ ।** ଆମର୍ ଭାସାର୍ ପର୍‌ତି କିସମ୍ ଆରୁ ପର୍‌ତି ବିକଲ୍‌ପକେ ସମ୍ମାନ୍ ଦେଇଁ କରିଁ, ମାଏନ୍‌ତା ଦେଇଁ କରିଁ ସେନେହର୍ ସହିତ୍ ଅପ୍‌ନାବାକେ ପଡ଼୍‌ବା । କମ୍‌ସେକମ୍ ଆମର୍ ଏକତାର୍ ଲାଗିଁ, ଆମର୍ ସୁସଙ୍ଗଠନର୍ ଲାଗିଁ ଏନ୍ତା କର୍‌ବାକେ ହିଁ ପଡ଼୍‌ବା । **ଜଦି କେଭେଁ ଆମର୍ ସମ୍‌ଲପୁରି-କୁସ୍‌ଲିର୍ ମାନକ୍(STANDARD) ଭାସାଟେ ବନ୍‌ବା ବଏଲେଁ ଆମ୍‌କୁଁ ସମ୍‌କୁଁ ଏକ୍ ଜୁଟ୍ କରିଁ, ଠୁଲେଇଁ କରିଁ ବନୁ ।**

ଇ ନଁ ଜାହା ସବୁ ତଥ୍ୟ ଆରୁ ବିଚାର୍ ହାତ୍‌କେ ଆଏଲା, ସେ ସବୁ

ବେଭାର୍ କରିଁ ଆମର୍ ଭାସାର୍ ଜେନ୍ ଅଲଗ୍‌ପନ୍(DISTINCTION)ଟେ ଅଛେ, ଜେନ୍ ବ୍ୟକ୍ତିତ୍ୱ(INDIVIDUALITY)ଟେ ଅଛେ, ତାହାକେ ସାପ୍ ସାପ୍ ଦେଖାବାକେ ଆମର୍ ଭାସାର୍ ବର୍‌ନଁମାଲା ଥିଁ ଆମ୍‌କୁଁ ଲେଖ୍‌ବାକେ ପଡ଼୍‌ବା । ଆମେଁ ଜେନ୍ତା ଆରୁ ଜାଣାଁ କହୁଛୁଁ, ସେନ୍ତା ଆରୁ ତାଣାଁ ଲେଖ୍‌ବାକେ ପଡ଼୍‌ବା । ନେହେଲେଁ ଆମେଁ ଜାନିଥିଲା କିଛି ଭାସାମାନ୍‌କେଁ ଜେନ୍ ବର୍‌ନଁ ସଁସ୍‌କାର୍ ବଲିଁ ପିଡିକେପିଢ଼ି ଚିନ୍ତା କରୁଛନ୍ ଆମ୍‌କୁଁ ବି ସେ ଦୁଖେଁ ଘାଁଟିଁ ହେବାକେ ପଡ୍‌ବା । ସାଠେ ବରସ୍ ସେ ଭାସା ଥିଁ ଲେଖ୍‌ଲା ଉତାରେଁ ବି ଫେର୍ ବର୍‌ନାଁସୁଦ୍‌ଧି ହେଲା କାଏଁ ବଲିଁ ଚିନ୍ତା କର୍‌ବାକେ ପଡ଼୍‌ବା ।

## ସମଲ୍‌ପୁରି-କୁସ୍‌ଲି ବର୍‌ନଁମାଲା :

ସ୍ୱର ଧ୍ୱନିଁ ହଉଛେ ସାତ୍‌ଟା : ଅ , ଆ , ଇ , ଉ , ଏ (ଅଧା-ମୁଜିଁହେଲା, ସାମ୍‌ନାଁର୍), ଏ (ଅଧାମେଲା, ପଚ୍‌କୁଡିର୍) ଆରୁ ଓ ।

ବ୍ୟଞ୍ଜନଁ ଧ୍ୱନିଁ ହଉଛେ ତେତିସ୍‌ଟା :

କ୍ ଖ୍ ଗ୍ ଘ୍ ଙ୍

ଚ୍ ଛ୍ ଜ୍ ଝ୍ ଞ୍

ଟ୍ ଠ୍ ଡ୍ ଢ୍ ଣ୍

ତ୍ ଥ୍ ଦ୍ ଧ୍ ନ୍ ନ୍ହ୍

ପ୍ ଫ୍ ବ୍ ଭ୍ ମ୍

ଯ୍ ର୍ ର୍ହ୍ ଲ୍ ଲ୍ହ୍ ସ୍ ହ୍

ଉପଧ୍ୱନିଁ ଦର୍‌କାର୍ ହଉଛେ ପାଁଚ୍‌ଟା :

( ଘଂ୍ ) ( ଝଁ୍ ) ( ଣ୍ହ୍ ) ( ମ୍ହ୍ ) ( ୱ୍ ) ।

ଚିନ୍‌ହାଁ ଦର୍‌କାର୍ ତିନ୍‌ଟା : ଅନୁସ୍ୱାର ( ଂ ), ଚନ୍ଦ୍ରବିନ୍ଦୁ ( ଁ ), ହଲନ୍ତ ( ୍ ) ।

ସ୍ୱର ବରନ୍‌ମାନ୍‌କର୍ ମାତ୍ରା ସବୁ ହଉଛେ ପାଁଚ୍‌ଟା :

ଆ ( ା ), ଇ ( ି ), ଉ ( ୁ ), ଏ ( େ ), ଓ ( ୋ ) ।

ଫଲାମାନ୍‌କର୍ ବିସେ ନେଁ ବିଚାର୍ କର୍‌ବାକେ ପର୍‌ବା ଜେ, ଆମର୍ ଭାସା ଥିଁ ଦୁଇଟିକିଆ, ତିନ୍‌ଟିକିଆ ବ୍ୟଞ୍ଜନ୍‌ ଧ୍ୱନି ଅଢେସ ପାକ୍‌କେ ଅଛନ୍ । ଏନ୍ତା ଭାବେଁ ଗୁର୍‌ଦୁଟେ ଜୁକ୍‌ତାଖର୍ ବନାବାର୍ ଟା ଅସୁବିଧା ହଇପାରେ । ଜୁକ୍‌ତାଖରର୍ ପହେଲା ବ୍ୟଞ୍ଜନ୍‌ ଥିଁ ହଲନ୍‌ତ ଦେଇଁ କରିଁ ଲେଖିଲେଁ ଇ ସମସ୍ୟାର୍ ଅନେକ୍ ସମାଧାନ୍ ହେବା । ଜେନ୍‌ତା ଇ ନେଁ /ଜୁକ୍‌ତାଖରର୍, ହଲନ୍‌ତ, ଜେନ୍‌ତା/ ଇତ୍ୟାଦି ଲେଖାହଇଛେ । ବାକି, /ସମସ୍ୟା, ବ୍ୟାକରଣ, ସ୍ୱାମି, ସ୍ୱାଧିନ୍, ଗ୍ଲାନି, ପ୍ଲାନ୍/ ଇତ୍ୟାଦି ସବ୍‌ଦମାନ୍‌କୁଁ ଦେଖିଲେଁ ଜନାଁ ପରୁଛେ ଜେ ଇ ଯଫଲା ( ୍ୟ ), ଲଫଲା ( ୍ଲ ), ୱଫଲା ( ୍ୱ ) ବାଗିର୍ ଗୁଟା କେତେ ଆମର୍ ଲେଖା ଥିଁ ବି ଆମେଁ ବେଭାର୍ କଲେଁ ସୁବିଧା ହେବା ( ୧୬ ) ।

ଏନ୍ତା ଭାବେଁ ଆମର୍ ଭାସାର୍ ଲାଗିଁ ଉଡିଆ ଲିପିର୍ ଜେତ୍‌କି ବରନ୍, ମାତ୍ରା, ଫଲା, ଜୁକ୍‌ତାଖର୍ ଆଦି ଦର୍‌କାର୍, ଖାଲି ସେତ୍‌କି ବେଭାର୍ କର୍‌ବାର୍ ଉଚିତ୍ । ତାର୍ ସାଙ୍ଗେଁ ଉଡିଆ ଲିପିର୍ ସୁନ୍( ୦ ) ନୁଁ ନଅ( ୯ ) ତକ୍ ଦସ୍‌ଟା ଚିନ୍‌ହାଁ ଆରୁ ଗଣିତ୍ ବିଦ୍ୟା ଜେନ୍ ସବୁ ଚିନ୍‌ହାଁ ବେଭାର୍ କରସି, ଧିରେ ଧିରେ ହେଁ ସବୁ ବି ଅପ୍‌ନାଁବାର୍ ଉଚିତ୍ । ଇ ସବୁ କଥାକେ ଭଲ୍ ଭାବେଁ ବିଚାର୍ କର୍‌ବାକେ ଆରୁ ମନ୍‌କେ ଆଏଲେଁ, ବିଲମ୍ ନେଇଁ କରିଁ କରିଁ, ନିଜର୍ ଲେଖା ଥିଁ ଅଭ୍ୟାସ୍ କର୍‌ବାକେ ବିନ୍‌ତି । ଜୟ ପ୍ରଭୁ !

## ସମଲପୁରି-କୁସଲି ବରନଁ ତାଲିକା :

| ନମର୍ | ଆଇପିଏ ନୁଁ | ଓଡିଆ ଲିପି ନୁଁ | | ଦେବ୍‌ନାଗ୍‌ରି ଲିପି ନୁଁ | |
|---|---|---|---|---|---|
| | | ବରନଁ | ମାତ୍ରା/ଫଲା | ବରନଁ | ମାତ୍ରା/ଫଲା |
| 1 | i | ଇ | ି | इ | ि |
| 2 | e | ଏ | େ | ए | े |
| 3 | ɛ | ଏ | େ | ऐ | ै |
| 4 | a | ଆ | ା | आ | ा |
| 5 | ɔ | ଅ | – | अ | – |
| 6 | o | ଓ | େ ା | ओ | ो |
| 7 | u | ଉ | ୁ | उ | ु |
| 8 | p | ପ | – | प | - |
| 9 | ph | ଫ | – | फ | - |
| 10 | b | ବ | – | ब | - |
| 11 | (w) | (ୱ) | ୍ୱ | (व) | ्व |
| 12 | bh | ଭ | – | भ | – |
| 13 | t̲ | ତ | ୍ତ | त | ्त |
| 14 | t̲h | ଥ | ୍ଥ | थ | ्थ |
| 15 | d̲ | ଦ | | द | - |
| 16 | d̲h | ଧ | - | ध | - |

| | | | | | |
|---|---|---|---|---|---|
| 17 | t | ଟ | - | ट | - |
| 18 | th | ଠ | - | ठ | - |
| 19 | d | ଡ | - | ड | - |
| 20 | dh | ଢ | - | ढ | - |
| 21 | c | ଚ | - | च | ट |
| 22 | ch | ଛ | - | छ | - |
| 23 | j | ଜ | - | ज | - |
| 24 | jh | ଝ | - | झ | - |
| 25 | k | କ | - | क | - |
| 26 | kh | ଖ | - | ख | - |
| 27 | g | ଗ | - | ग | - |
| 28 | gh | ଘ | - | घ | - |
| 29 | m | ମ | [illegible] | म | [illegible] |
| 30 | (mh) | (ମ୍ହ) | - | (म्ह) | - |
| 31 | n | ନ | [illegible] | न | [illegible] |
| 32 | nh | ନ୍ହ | - | न्ह | - |
| 33 | ṇ | ଣ | - | ण | - |
| 34 | (ṇh) | (ଣ୍ହ) | - | (ण्ह) | - |
| 35 | ɲ | ଞ | - | ञ | - |
| 36 | (ɲh) | (ଞ୍ଝ) | - | (ञ्झ) | - |
| 37 | ŋ | ଙ | - | ङ | - |
| 38 | (ŋh) | (ଙ୍ଘ) | - | (ङ्घ) | - |
| 39 | r | ର | [illegible] | र | [illegible] |
| 40 | rh | ର୍ହ | - | रह | - |

| | | | | | |
|---|---|---|---|---|---|
| 41 | l | ଲ | ୍ଲ | ल | ्ल |
| 42 | lh | ଲ୍ହ | - | ल्ह | - |
| 43 | s | ସ | - | स | - |
| 44 | h | ହ | - | ह | - |
| 45 | y | ୟ | ୍ୟ | य | ्य |
| 46 | ~ | - | ଁ | - | ँ |
| 47 | - | - | | - | |

ସୁଚ୍ନା: ଉପଧ୍ୱନିଁମାନ୍‌କୁଁ ବନ୍ଧନିଁ ଭିତ୍ରେଁ ଦିଆହଇଛେ ।

## ୨

# ଉଡିଆ ଲିପି ନୁଁ ସମଲ୍‌ପୁରି-କୁସ୍‌ଲି ବର୍‌ନଁମାଲା ଆରୁ ଇହାଦେ ଆମର୍ ଲେଖ୍‌ବାର୍ ଧାରା

(୧)

ଇ ନଁ ଜାହା ଲେଖା ହଇଛେ ତେହିର୍ ଏଖେଇ ଗୁଟେ ମତ୍‌ଲବ୍ ଜେ, ଆପଣ୍ ଭାସାମାଁର୍ ଜେନ୍ ସେବା କର୍‌ବାକେ ବାହାରିଛନ୍, ସେ ଟା ସରଲ୍ ହଉ, ସାପ୍ ହଉ ଆରୁ ସୁନ୍ଦର୍ ହଉ । ଆମର୍ ଭାସା ଦୁସ୍‌ରା ଭାସାମାନ୍‌କର୍ ନୁଁ ଅଲଗ୍ ଆଏ । କହେବାର୍ ଥିଁ ଜେନ୍‌ତା ଅଲଗ୍ ଆଏ, ଲେଖ୍‌ବାର୍ ଥିଁ ବି ହେନ୍‌ତା ଅଲଗ୍ ଆଏ । ଆମେଁ ଉଡିଆ ଲିପି ଥିଁ ଲେଖୁଁ କି ଦେବ୍‌ନାଗ୍‌ରି ଥିଁ ଲେଖୁଁ କି ରୋମାନ୍ ଥିଁ ଲେଖୁଁ, କିଛି ଫରକ୍ ନେଇଁ ପଡେ । ଆମର୍ ଭାସାର୍ ଚେହେରା ହଉଛେ ଅସଲ୍ । ଆମେଁ ଜେନ୍‌ତା କହୁଛୁଁ ହେନ୍‌ତା ଲେଖ୍‌ବାର୍ ଉଚିତ୍ । ଇ କଥା ହଇ ପାର୍‌ବା, ଆମେଁ ଉଡିଆ ବର୍‌ନଁମାଲା ଥିଁ ନେଇଁ ଲେଖିଁ କରିଁ ଜଦି ସମଲ୍‌ପୁରି-କୁସ୍‌ଲି ବର୍‌ନଁମାଲା ଥିଁ ଲେଖ୍‌ମାଁ । ଅବିସ୍ ଉଡିଆ ଲିପି ଥିଁ ଲେଖ୍‌ମାଁ, ବାକି ସମଲ୍‌ପୁରି-କୁସ୍‌ଲି ବର୍‌ନଁମାଲା ଥିଁ ।

୧) ଉଡିଆ ଲିପିର୍ ବର୍‌ନଁମାଲା :

ସ୍ୱର- ଅ ଆ ଇ ଈ ଉ ଊ ଋ ୠ
୬ ଦିର୍ଘ୍‌ଲୁ ଏ ଐ ଓ ଔ = ୧୪

ବ୍ୟଞ୍ଜନ୍- କ୍ ଖ୍ ଗ୍ ଘ୍ ଙ୍ ଚ୍ ଛ୍ ଜ୍ ଝ୍ ଞ୍
ଟ୍ ଠ୍ ଡ୍ ଢ୍ ଣ୍ ତ୍ ଥ୍ ଦ୍ ଧ୍ ନ୍
ପ୍ ଫ୍ ବ୍ ଭ୍ ମ୍ ଯ୍ ର୍ ଲ୍ ବ୍ ଶ୍
ଷ୍ ସ୍ ହ୍ କ୍ଷ୍ ୟ୍ ଡ଼୍ ଢ଼୍ ଳ୍ = ୩୮

ଅଜୋଗବାହ - ଅନୁସ୍ୱାର (ଂ), ବିସର୍ଗ (ଃ) ଆରୁ ଚନ୍ଦ୍ରବିନ୍ଦୁ (ଁ) = ୩
ଚିନ୍‌ହାଁଟେ - ହଲନ୍ତ (୍) = ୧
ଇ ସବୁ ସାଙ୍ଗେଁ ମିସ୍‌ବା ମାତ୍ରା, ଫଲା ଆରୁ ଜୁକ୍‌ତାଖର୍ ସବୁ । ସୁନ୍ (୦) ନୁଁ ନଅ (୯) ତକ୍ ଅଙ୍ଗ୍‌କ ବି ।

୨) ଓଡ଼ିଆ ଭାସାର୍ ବର୍‌ନଁମାଲା :

ସ୍ୱର ବର୍‌ନଁ ନୁଁ ତିନ୍‌ଟା ଅଖର୍ ( ଋ, ଌ, ଦିର୍ଘଲୁ ) ବାଦ୍ ଦେଲେଁ ବାକି ସବୁ, ଦର୍‌କାର୍ ଥଉ କି ନେଇଁ ଥଉ, ବେଭାର୍ ହଉଛେ । ଅବର୍‌ଗ୍ୟ 'ବ' କେ 'ୱ' ବାଗିର୍ ଲେଖା ହଉଛେ ।

୩) ସମଲ୍‌ପୁରି-କୁସ୍‌ଲି ଭାସାର୍ ବର୍‌ନଁମାଲା :

ଆମର୍ ଇଲାକା ନଁ ଆମେଁ ଜେନ୍‌ତା କହେସୁଁ, ତାହାକେ ପରିଖ୍ୟା କଲେଁ ଜେନ୍ ଧ୍ୱନିଁ/ଧ୍ୱନିଁଗ୍ରାମ୍ ସବୁ ପାଏମାଁ, ତେହେରୁଁ ପର୍‌ତି ଧ୍ୱନିଁର୍ ଲାଗିଁ ଗୁଟେ ଲେଖା ଚିନ୍‌ହାଁ ନେଇଁ କରିଁ ଜେନ୍ ବର୍‌ନଁମାଲାଟେ ହେବା, ସେ ଟା ହଉଛେ ସମଲ୍‌ପୁରି-କୁସ୍‌ଲି ଭାସାର୍ ବର୍‌ନଁମାଲା ।

ସ୍ୱର - ଅ ଆ ଇ ଉ ଏ ଏ ଓ ଆରୁ ମାତ୍ରା ।
ସବୁ ହଇଁ ୬(ବର୍‌ନଁ) + ୫(ମାତ୍ରା) = ୧୧ ।

ବ୍ୟଞ୍ଜନଁ - କ୍ ଖ୍ ଗ୍ ଘ୍ ଙ୍ ଙ୍ଘ୍
ଚ୍ ଛ୍ ଜ୍ ଝ୍ ଞ୍ ଞ୍ଝ୍
ଟ୍ ଠ୍ ଡ୍ ଢ୍ ଣ୍ ଣ୍ହ୍ (ଣ୍‌ହ୍)
ତ୍ ଥ୍ ଦ୍ ଧ୍ ନ୍ ନ୍ହ୍ (ନ୍‌ହ୍)
ପ୍ ଫ୍ ବ୍ ଭ୍ ମ୍ ମ୍ହ୍ (ମ୍‌ହ୍)
ଯ୍ ର୍ ର୍ହ୍ (ର୍‌ହ୍) ଲ୍ ଲ୍ହ୍ (ଲ୍‌ହ୍)
ୱ୍ ସ୍ ହ୍ = ୩୮

ଚିନ୍‌ହାଁ - ଅନୁସ୍ୱାର (ଂ), ଚନ୍ଦ୍ରବିନ୍ଦୁ (ଁ),
ହଲନ୍ତ (୍) = ୩

ଅଙ୍ଗ୍‌କର୍ ଚିନ୍‌ହାଁ - ସୁନ୍ (୦) ନୁଁ ନଅ (୯) ତକ୍ = ୧୦

ଠିକ୍ ଭାବେଁ ଲେଖିବାର୍ ସମ୍ଭାବନାଁ ଦେଖୁଛେଁ ବଲିଁ ଇ କଥାକେ ବାର୍ ବାର୍ ବିଚାର୍ କର୍‌ବାକେ କହୁଛେଁ । ସମଲ୍‌ପୁରି-କୁସ୍‌ଲି ବଲିଁ **ବିକ୍ରୁତ୍ ଉଡିଆ** ଲେଖା ନେଇଁ ହଉ । ଲେଖିବାର୍ ତରିକା ଠିକ୍ କଲେଁ ଭାସାମାଁର୍ ଚେହେରା ଦକ୍ କର୍‌ବା । ଉଡିଆ ପରମ୍ପରା, ଏନ୍ତା କି ସଁସ୍କ୍ରୁତ୍ ପରମ୍ପରା ବି ଅପ୍‌ନାଲେଁ ଆମର୍ ଭାସାର୍ ହାତ୍-ଗୋଡ୍ ବିକ୍ରୁତ୍ କଲା ବାଗିର୍ ହେବା ।

ଆମେଁ ଜେନ୍ ଧ୍ୱନିଁମାନ୍‌କୁଁ କହେଲା ବେଲ୍‌କେ ବେଭାର୍ ନେଇଁ କର୍‌ବାର୍ ଲେଖିଲା ବେଲ୍‌କେ ସେ ଧ୍ୱନିଁମାନ୍‌କର୍ ଚିନ୍‌ହାଁମାନ୍‌କୁଁ (ବରନ୍‌ମାନ୍‌କୁଁ ) କାଣ୍ଡେଁ ବେଭାର୍ କର୍‌ମାଁ ? ଆମେଁ କାଁ ହେଲା ଜେ କହେମାଁ ପାଖେ ଆରୁ ଲେଖ୍‌ମାଁ ପାଖେ, ଆରୁ ଆମର୍ ଏତେ ସୁନ୍ଦର୍ ଭାସାକେ **ବିକ୍ରୁତ୍ ଉଡିଆ** ବଲିଁ ଲୋକ୍ କହେବେ ?

(୨)

ଆମେ ଜଦି ଉଡିଆ ବରନ୍‌ମାଲା ବେଭାର୍ କର୍‌ମାଁ ବଏଲେଁ ଆମର୍ ଭାସାକେ "**ବିକ୍ରୁତ୍ ଉଡିଆ**" ବଲିଁ କୁହାଜାଇପାର୍‌ବା । ଉଡିଆ ଭାସାର୍ ବରନ୍‌ମାଲା ଥିଁ ଜେନ୍ ଦୁର୍‌ବଲତା ସବୁ ଅଛେ, ଆମର୍ ଭାସାର୍ ଲେଖା ରୁପ ଥିଁ ବି ସେ ସବୁ ରହେବା । ଉଡିଆ ବଲୁନ୍ କି ହିନ୍‌ଦି ବଲୁନ୍ କି ସଁସ୍କ୍ରୁତ୍ ବଲୁନ୍, ଆମେଁ କେନ୍‌ସି ଦୁସ୍‌ରା ଭାସାର୍ ଲେଖିବାର୍ ଧାରାକେ ଅପ୍‌ନାଲେଁ ସେ ଟା ଆମର୍ ଭାସାର୍ ଲାଗିଁ ମାରାତ୍ମକ୍ ହେବା । ତାର୍ ଜେନ୍ ସୁନ୍ଦର୍ ଅଲଗ୍‌ପନ୍‌ଟେ ଅଛେ, ସେ ଟା ଲେବୋକେଚୋ ହଇଁଞ୍ଜିବା । ତେହିର୍ ଲାଗିଁ ଆମର୍ ଭାସାର୍ ଲେଖିବାର୍ ପରମ୍ପରାଟେ ଆମ୍‌କୁଁ ବନାବାକେ ପଡ୍‌ବା ।

ସେ ପରମ୍ପରା, ସେ ଲେଖିବାର୍ ଧାରା ବନ୍‌ତେଲ୍ ଜଉଛେ । ଆମେଁ ଖାଲି ସଚେତନ୍ ହେଲେଁ ହେଲା । ମୁଲ୍ କର୍‌ବାକେ, ଗୁଟେ 'ସ', ଗୁଟେ 'ଜ',

ଗୁଟେ ସ୍ୱର (ଇ, ଉ) ଇତ୍ୟାଦି ବେଭାର୍ କରାଜଉ । ରୁ (ର) ଆରୁ ଲୁ (ଌ) ଆମର୍ ଭାସାର୍, ଏନ୍ତା କି ଉଡିଆ ଭାସାର୍ ବି ସ୍ୱର ଧ୍ୱନିଁ ନହେସେ । ସେମାନ୍‌କୁଁ ଜେନ୍ତା ଲେଖିବାର୍ କଥା (ରୁ, ଲୁ) ସେନ୍ତା ଲେଖାଜଉ । ଆମର୍ ଭାସାର୍ ଅନେକ୍ ବିଦ୍ୱାନ୍, କବି, ନାଟ୍ୟକାର୍, ସମାଲୋଚକ, କଥାନିଁକାର୍ ଇତ୍ୟାଦି ଇ ନୁଆଁ ଧାରାକେ ଅପ୍‌ନାଲେନଁ ଆରୁ ତାର୍ ପରମ୍ପରାକେ ବୁର୍‌ସାଲ୍ କର୍‌ବାରେଁ ଲାଗିଛନ୍ । ସେମାନ୍‌କୁଁ ଧନ୍ୟବାଦ୍ ! ଆମର୍ ଭାସାର୍ ବରନଁମାଲା ଥିଁ ଲେଖିଲେଁ ଆମର୍ ଭାସାର୍ ଲାଗିଁ ସହଜ୍ ହେବା, ସରଲ୍ ହେବା, ସୁନ୍ଦର୍ ହେବା, ଉଚିତ୍ ହେବା, ବିଗ୍ୟାନ୍‌ସମ୍ମତ୍ ହେବା ବଲିଁ ଆରୁ ଦଲେ ଆମର୍ ଉତ୍‌ସାହି ଲେଖକ ଭାବୁଛନ୍ । ବାକି, ଉଡିଆ ଭାସାର୍ ଲେଖିବାର୍ ଧାରାକେ ଛାଡି ନେଇଁ ପାର୍‌ବାର୍ । କାଏଁ ଥିର୍ ଲାଗିଁ ଛାଡି ନେଇଁ ପାର୍‌ବାର୍ ?

୧) ଅଲ୍‌ସୁଆପନ୍ :

ଏତ୍‌କି ଦିନ୍ ତକ୍ ମୁନ୍‌ସର୍ ଇତିହାସ୍‌କେ ଦେଖିଲେଁ ଜନ୍‌ଆଁପର୍‌ସି ଜେ, ଆମେଁ ସହଜେଁ ନୁଆଁ ଧାରାଟେ କି ନୁଆଁ ଚିନ୍‌ତାଧାରାଟେ ଅପ୍‌ନେଇ ନେଇଁ ପାରୁଁ । ବଲ୍‌ମାଁ, "ଏହ୍ ! ଚଲୁଛେ ତ ହୋ ! ଏତ୍‌କି ଦିନ୍ ତକ୍ ଆମେଁ /କୃଷକ, ଚାଷୀ, ଈଶ୍ୱର, ଧ୍ରୁବ/ ଇତ୍ୟାଦି ଲେଖିଁଅଉଛୁଁ, ଇହାଦେ ଫେର୍ /କ୍ରୁସକ, ଚାସି, ଇସ୍ୱର, ଧ୍ରୁବ/ ହିସାବେଁ କିଏ ବଦ୍‌ଲେଇ ପାରେ ହୋ !" ଇ ନଁ ଆମେଁ ଖାଲି ଭୁଲିଁ ଜାଏସୁଁ ଜେ ପହେଲା ଲେଖିବାର୍ ଧାରା ଟା ହଉଛେ ଉଡିଆ ଲେଖିବାର୍ ଧାରା, ଆରୁ ପଛର୍ ଟା ହଉଛେ, ଆମେଁ ଜେନ୍‌ତା କହେସୁଁ ସେନ୍ତା ଲେଖିବାର୍ ଧାରା ।

୨) ହିନ୍‌ମନିଆଁପନ୍ :

"ମୁଇଁ ଝନ୍‌ଏ ସିକ୍ଷ୍ୟକ । ଇସ୍‌କୁଲେଁ ଛୁଆକୁଁ ବିସୁଦ୍‌ଧ ଉଡିଆ ସିଖଉଛେଁ । ମୁଇଁ ଝନ୍‌ଏ ଉଡିଆର୍ ଅଧ୍ୟାପକ । କେନ୍ତା ଢଙ୍ଗେଁ ଗୁଟେ ସବ୍‌ଦର୍ ଦୁଇ ରକମ୍ ଲେଖିବାର୍ ତରିକା ବେଭାର୍ କର୍‌ମିଁ ? ସିଖାମିଁ ପିଲାକୁଁ /ମାତୃଭାଷା/ ବଲିଁ ଆରୁ ଲେଖ୍‌ମିଁ /ମାତ୍ରୁଭାସା/ ବଲିଁ ? ହେନ୍ତା କଲେଁ ଲୋକ୍ କାଁ ବଲ୍‌ବେ ?" ଇ ନଁ ବି

ଆମେଁ ଭୁଲିଁ ଜାଏସୁଁ ନିଜର୍ ଭାସାକେ । ତାର୍ ଅଲଗ୍‌ପନ୍ ଦେଖିଁ କରିଁ ଉସତ୍ ହେବାର୍ ଛାଡିଁ ବଲ୍‌ସୁଁ, ହେନ୍ତା ଆମେଁ କହେମାଁ ସିନେଁ, ଜେନ୍ତା ଲେଖିସୁଁ ସେନ୍ତା ଲେଖିମାଁ । ଇ ହିନ୍‌ମନିଆଁପନ୍‌କେ ଅଲ୍‌ଗେଇଁ କରିଁ ଆମେଁ ଜେନ୍ତା କହେସୁଁ, ସେନ୍ତା ଲେଖୁଁ । ତେହିଁ ଅଛେ ଆମର୍ ମଙ୍ଗଲ୍ ।

୩) ରଖ୍ୟଣସିଲତା

ଠିକ୍ ମାତ୍ରା ନଁ ରଖ୍ୟଣସିଲତା ଗୁଟେ ଭଲ୍ ଗୁଁନ୍ ଆଏ । ବେସି ମାତ୍ରା ନଁ ଖତର୍‌ନାକ୍ ବି ଆଏ । ଆମର୍ ଆଗ୍‌ଲି ପିଢିର୍ ଲୁକେ ଜାହା ସବୁ କରିଛନ୍, ଭଲ୍-ଅସାର୍, ସେ ସବୁ ଇହାଦେ ଆମେଁ ଭୋଗ୍ କରୁଛୁଁ । ତାକର୍ ନୁଁ ଗ୍ୟାନ୍ ପାଇଛୁଁ । କିଛି ହଉ ସୁଖେଁ ଅଛୁଁ । ତେହିର୍ ଲାଗିଁ ତାକର୍ ନଁ ଆମେଁ କ୍ରୂତଗ୍ୟଁ ହେମାଁ, ତାହାକୁଁ ସ୍ରଦ୍‌ଧା କରମାଁ ଆରୁ ସୋର୍ କରମାଁ । ଇ ସବୁ ସମ୍ଭବ୍ ହଉଛେ ଆମର୍ ନଁ କିଛି ମାତ୍ରା ନଁ ରଖ୍ୟଣସିଲତା ଅଛେ ବଲିଁ । ଇ ମାତ୍ରା ଜେତେବେଲେଁ ଜହ ହେସି, ତେହେଗୁଁ ଆମେଁ ରୁଢିବାଦି ବନ୍‌ସୁଁ । ଜାହା ଚଲିଁ ଅଉଛେ, ଜେନ୍ ଟା ଠିକ୍ ଆଏ ବଲିଁ ଆମେଁ ଭାବିଁ ନେଲାଁ, ସେ ଟା ସେ ଦିନର୍ ସତିଦାହ କି ନରବଲି କି ଏଭର୍ ପସୁବଲି ବାଗିର୍ ଜେତେ ମାରକ୍ ହେଲେଁ ବି ସହଜେଁ ଆମେଁ ଛାଡି ନେଇଁ ପାରୁଁ । ଏନ୍ତା କି ତାର୍ ଭଲ୍-ଅସାର୍ ବିଚାର୍ କର୍‌ବାକେ ବି ମନ୍ ନେଇଁ କରୁଁ । ଛାଡ ହୋ ! ଜେନ୍ ଟା ଅଛେ ଠିକ୍ ଅଛେ ବଲ୍‌ସୁଁ । ଆରୁ ଦୁସ୍‌ରା କଥାକେ ବିର୍‌ଝିସୁଁ ।

ଆମେଁ ବିଚାର୍‌ବାନ୍ ହେଲେଁ ପରମ୍‌ପରାକେ ସମ୍ମାନ୍ ଦେସୁଁ । ଏକ୍ ଧର୍‌ସିଆ ରୁଢିବାଦି ହେଲେଁ, ଆମର୍ ବିଚାର୍ ବାହାରେଁ ଦୁସ୍‌ରା କେନ୍‌ସି ବିଚାର୍ ଆମେଁ ଅପ୍‌ନେଇ ନେଇଁ ପାରୁଁ । ଆମେଁ ଭୁଲିଁ ଜାଏସୁଁ ଜେ ଆମର୍ ବାଗିର୍ ସାଧାରଣ ମୁନ୍‌ସର୍ କେନ୍‌ସି ବି ବିଚାର୍ ସେସ୍ ବିଚାର୍ ନହେସେ । ଆମ୍‌କୁଁ ସହଜ୍-ସରଲ୍-ସୁନ୍ଦର୍ ହେବାକେ ବିକଲ୍‌ପ ସବୁ ନୁର୍‌ବାକେ ପଡ୍‌ବା । ଜବ୍ ତକ୍ ଆମେଁ ଠିକ୍ ଧାରାଟେ ନହେ ପାଏବାର୍, କେନ୍‌ସି ବି ଜୁକ୍ତିଜୁକ୍ତ, ବିଗ୍ୟାନ୍ ସମ୍ମତ୍ କଥାଟେ ଆଏଲେଁ ଆମେଁ ସେ ଟାକେ ବିଚାର୍ କର୍‌ବାର୍ କଥା । ନେହେଲେଁ ଆମର୍ ଉନ୍ନତି, ଆମର୍ ପ୍ରଗତି ସେ ନଁ ଥେବିଁଜିବା ।

ଆମର୍ ସଁସ୍‌କ୍ରୂତିର୍ ମହାନ୍ ସୁତ୍ରଟେ ହଉଛେ, 'ଚରୈବେତି', ଆଗ୍‌କେ

ଚାଲୁଁ । ଏକ୍‌ଦମ୍ ଠିକ୍ ଜାଗାକେ ନେଇଁ ପୁହୁଁଚିବାର୍ ତକ୍ ବିକଳ୍ପ ବିଚାର୍‌ମାନ୍‌କୁଁ ଆସିଦଉଁ । ସେମାନ୍‌କୁଁ ଆଦର୍ କରିଁ ମନ୍‌ଥନ୍ କରୁଁ । ଆରୁ ଗୁଟେ ବେଦ-ମନ୍ତ୍ର ହେଲା, 'ଉତ୍‌ତିଷ୍ଠତ ଜାଗ୍ରତ ପ୍ରାପ୍ୟବରାନ୍ ନିବୋଧତ' । ଖୁବ୍ ସମ୍ଭବ୍ ଆମର୍ ଜହ ରଖ୍ୟଣ୍‌ସିଲତାର୍ ଲାଗିଁ ଆମେଁ ଆମର୍ ଭାସାକେ ଠିକ୍ ଭାବେଁ ନେଇଁ ଲେଖିଁ କରିଁ, ଲେଖୁଛୁଁ ପାଖେ ଆରୁ କହୁଛୁଁ ପାଖେ ।

ଇହାଦେ ଆସୁଁ ଆମର୍ ଭାସାର୍ ଲେଖ୍‌ବାର୍ ତରିକା ନିକେ । ଇହାଦେ ଆମର୍ ଲେଖ୍‌ବାର୍ ଧାରା ହଉଛେ ତିନ୍ ପ୍ରକାର୍ ।

କ) ଆମର୍ ଭିତ୍‌ରୁଁ ଦଲେ ଉଡିଆ ଥିଁ ଜେନ୍ତା ଲେଖାହେସି ସେନ୍ତା ଲେଖୁଛନ୍ । ଇ ନଁ ଆମେଁ କହୁଛୁଁ ପାଖେ ଆରୁ ଲେଖୁଛୁଁ ପାଖେ । ଇ ନଁ ଏନ୍ତା ବି ରୁଢ଼ିବାଦି ବିଦ୍ୱାନ୍‌ମାନେଁ ଅଛନ୍ ଜେ, ଆମର୍ ଲେଖ୍‌ବାର୍ ଧାରା ଥିଁ ନେଇଁ ହେଲା କଥା ବି କରାଜଉ ବଲୁଛନ୍ । ଜେହେତୁ ଆମେଁ ଉଡିଆ ଲିପି ଥିଁ ଲେଖୁଛୁଁ, ସେ ଲିପିର୍ ହରେକ୍ ବର୍‌ନଁ ପରେ ବେଭାର୍ କର୍‌ମାଁ । ଅଉର୍ ଗଲା ଅଉର୍ ଗଲା, ଜେନ୍ ବର୍‌ନଁକେ ଆମେଁ କିହେ ବି କେଭେଁ ବେଭାର୍ ନେଇଁ କର୍‌ବାର୍ ହେଁ 'ଳ'କେ ବି ବେଭାର୍ କରୁଁ ବଲୁଛନ୍ । ତାର୍ ମାନେଁ 'ବାଳକ' ଲେଖୁଁ ଆରୁ କହୁଁ 'ବାଲକ୍' । 'ମୁଣ୍ଡର ବାଳ' ଲେଖୁଁ ଆରୁ କହୁଁ 'ମୁଡର୍ ବାଲ୍' । ଏନ୍ତା କଲେଁ ଆମର୍ ଲେଖା କେଭେଁ ବି ସମଲ୍‌ପୁରି-କୁସ୍‌ଲି ନେଇଁ ହଇପାରେ । ହେବା ବିକ୍ରୁତ୍ ଉଡିଆ ।

ଇ ରକ୍‌ମର୍ ଲେଖା ଥିଁ ଗୁଟେ ରହସ୍ୟ ଅଛେ । ସଁସ୍କ୍ରୁତ୍‌କେ ଛାଡିଁ କରିଁ ବାକି ବଡ୍ ଭାଗ ଭାସା ଥିଁ ଇ ରହସ୍ୟ ଘଟୁଛେ । ଲେଖା ପାଖେ ତ ତାହାକେ ପଡ୍‌ଲେଁ ପାଖେ । ଆମର୍ ଇ ଧାରା ଥିଁ ଲେଖ୍‌ଲା ଟା ହେବା ବିକ୍ରୁତ୍ ଉଡିଆ । ଲେଖାକେ ନେଇଁ ପଢ଼ିଁ କରିଁ ଖାଲି ସୁନ୍‌ଲେଁ ହେବା ସମଲ୍‌ପୁରି-କୁସ୍‌ଲି । ସେ ଟା କେନ୍ତା ହଉଛେ ଦେଖାଜଉ । ବିକ୍ରୁତ୍ ଉଡିଆ ବାକ୍ୟଟେ ନଉଁ ।

'ହଇପାରେ, ଇ ଖୁସିର ଖବରଟା ଏତେ ବଡ଼ ଭାଷାବିଜ୍ଞାନୀଙ୍କୁ ପହେଲା ଦେଲେ, ସମ୍ବଲପୁରୀ-କୋଶଲୀ ଭାଷାର ପ୍ରତିଷ୍ଠାର ଲାଗି ଆରୁ କାଣା କାଣା କରାଯାଇପାରେ ତେହିର ସତ ପରାମର୍ଶ ତାକର ନୁ ମିଳିପାରେ ବୋଲି ସେମାନେ ଭାବିଥିବେ' ।

ଇ ନଁ ଦେଖୁନ୍, ଉଡିଆ ଥିଁ ଜେନ୍ତା ଲେଖା ହେସି ସେନ୍ତା ଲେଖା ହଇଛେ । ଇ ବାକ୍ୟ ଜେ ଲେଖିଛେ, ସେ ଜଦି ପଢ଼୍ଭା ଆରୁ ଆମେଁ ସୁନ୍‌ମାଁ ବଏଲେଁ ସେ ଟା ହେବା,

'ହଇପାରେ, ଇ ଖୁସିର୍ ଖବର୍ ଟା ଏତେ ବଡ୍ ଭାସା-ବିଗ୍ୟାନିଁକୁଁ ପହେଲା ଦେଲେଁ ସମଲ୍‌ପୁରି-କୁସ୍‌ଲି ଭାସାର୍ ପ୍ରତିସ୍‌ଠାର୍ ଲାଗିଁ ଆରୁ କାଣାଁ କାଣାଁ କରାଜାଇପାରେ, ତେହିର୍ ସତ୍ ପରାମର୍ସ ତାକର୍ ନୁଁ ମିଳିପାରେ ବଲିଁ ସେମାନେଁ ଭାବିଥିବେ ।' (**ନୁଆଁ ସକାଲ୍ - ୯**, ପୃସ୍‌ଠା ୪୨) ।

ଇହାଦେ ରହସ୍ୟ ସଫା ହଇଥିବା । ଗୁଟେ ଲେଖାରୁପକେ ଝନ୍‌ଏ ବିକ୍ରୁତ୍ ଉଡିଆ ବଲ୍‌ବା ବଏଲେଁ ଆର ଲେଖାରୁପ ଟା ସେ ଭାସାର୍ ଧ୍ୱନିଁଗ୍ରାମ୍‌ସୁଚକ୍ ବର୍‌ନଁମାଲା ଥିଁ ଲେଖାହଇଛେ ବଲିଁ ଜେ ହେଲେଁ ଇ ଟା ସମଲ୍‌ପୁରି-କୁସ୍‌ଲି ଆଏ ବଲ୍‌ବା ।

ଖ) ଦୁଇ ନମର୍ ଲେଖ୍‌ବାର୍ ଧାରା ହଉଛେ, **ଆମେଁ ଜେନ୍ତା କହୁଛୁଁ ସେନ୍ତା ଲେଖ୍‌ବାର୍ ଧାରା** । ସହଜ୍, ସରଲ୍, ସୁନ୍ଦର୍ ଆରୁ ବିଗ୍ୟାନ୍-ସମ୍ମତ୍ ଧାରା । ଇ ନଁ ବର୍‌ନାଁସୁଦ୍‌ଧି ବି ନେଇଁ ହଏ । ଆମେଁ କହେଲା ବେଲ୍‌କେ ଜେତ୍‌କି ଟା ଧ୍ୱନିଁଗ୍ରାମ୍ ଆରୁ ଜେତ୍‌କି ଟା ଉପଧ୍ୱନିଁ ବେଭାର୍ କଲେଁ କହେବାର୍ ଟା ସଫା ହେବା, ସେତ୍‌କି ଟା ବର୍‌ନଁ ବେଭାର୍ କରାହଇଛେ । ଉଡିଆ ଲିପିର୍ ଜେନ୍ ଜେନ୍ ବର୍‌ନଁ ସମଲ୍‌ପୁରି-କୁସ୍‌ଲି ଭାସା ଥିଁ ବେଭାର୍ ନେଇଁ କରାହେବାର୍, ସେ ସବୁ ହେଲା,

ସ୍ୱର - ଈ , ଊ , ଋ , ୠ , ଌ , ଦିର୍ଘଲ୍ଲୁ , ଐ , ଔ ।

ବ୍ୟଞ୍ଜନଁ - ଙ୍ , ଞ୍ , ଯ୍ , ଳ୍ , ଶ୍ , ଷ୍ , କ୍ଷ୍ ।

ଚିନ୍‌ହାଁ - ବିସର୍ଗ ( ଃ ) ।

ତେହେଲୁଁ ଆ , ଇ , ଉ , ଏ ଆରୁ ଓ ସ୍ୱରବର୍‌ନଁମାନ୍‌କର୍ ମାତ୍ରା ଆରୁ ବିକଲ୍‌ପ ଭାବେଁ ଜହ ବେଭାର୍ ହଉଥିବାର୍ ଜୁକ୍‌ତାଖର୍ ଥୁଡେ ବେଭାର୍ ହେବା । ଇ ଲେଖ୍‌ବାର୍ ଧାରା ଥିଁ ଆମର୍ ମତ୍‌ଲବ୍ ହେଲା, ଜେନ୍‌ତା କହୁଛୁଁ ସେନ୍‌ତା ଲେଖ୍‌ମାଁ ।

ଗ) ଆମର୍ ତିନ୍ ନମର୍ ଲେଖ୍‌ବାର୍ ଧାରା ହଉଛେ **କତ୍‌ଖତିଆ** । ଜେନ୍ ନଁ ଜାଣାଁ ହଇପାରଲା । ସେ ଗୁଟେ ସବ୍‌ଦକେ, ସେ ଗୁଟେ ଲେଖା ଭିତ୍‌ରେଁ ଭିନ୍ ଭିନ୍ ଭାବେଁ ଲେଖାହଇଥିବାର୍ ଟା । ଜେନ୍ତାକି 'ବରସା, ବରଷା, ବରଶା'; 'ଚାସି, ଚାସୀ, ଚାଷୀ' ଇତ୍ୟାଦି ଜେନ୍ ଟା ହଇପାରଲା ଲେଖାହଇଥିବା । ଛାପ୍‌ଲା ବେଲ୍‌କେ ଜେନ୍‌ମାନେଁ ପ୍ରୁଫ୍ ରିଡିଙ୍ଗ୍ କରୁଛନ୍, ଦେଖ୍‌ବେ ବଏଲେଁ ଠିକ୍ ହେବା ।

ଇ ବିସେ ନଁ ଅନେକ୍ ଆଲୋଚନାଁ ହଇଛେ ଆରୁ ହଉଛେ । ସେ ସବୁକୁଁ ବି ସୋର୍ କରିଁ, ବିଚାର୍ କରିଁ, ନିଜର୍ ଭାସା-ସାହିତ୍ୟ-ସଁସ୍‌କ୍ରୁତିର୍ ଜେନ୍ ଅଲଗ୍ ଚେହେରାଟେ ଅଛେ, ଅଲଗ୍ ପରିଚୟଟେ ଅଛେ, ତାହାକେ ଫଟିକ୍ କର୍‌ବାକେ ଜେନ୍ତା କଲେଁ ଠିକ୍ ହେବା, ସେନ୍ତା କରାଜଉ । ଜୟ୍ ପ୍ରଭୁ !

## ୩

# ସମଲ୍‌ପୁରି-କୁସ୍‌ଲି ସ୍ୱାଭିମାନ୍ : ବର୍‌ନଁମାଲାର୍ ଲାଗିଁ ବିଚାର୍‌ଟେ

ପ୍ରସ୍‌ନଁ :

ସମଲ୍‌ପୁରି-କୁସ୍‌ଲି ଭାସା ଥିଁ ଜେନ୍‌ମାନେଁ ଲେଖୁଛନ୍, ଜାହା ଦେଖ୍‌ବାକେ ମିଲୁଛେ, ଦଲେ 'ହ୍ରସ୍ୱ ଇ, ଦୀର୍ଘ ଈ, ହ୍ରସ୍ୱ ଉ, ଦୀର୍ଘ ଊ' ଇତ୍ୟାଦି ସବୁ ସ୍ୱରବର୍‌ନଁ ବେଭାର୍ କରୁଛନ୍, ଜେନ୍ତା ଉଡିଆ ଥିଁ ହେସି । ତିନ୍‌ହିଁ 'ଶ/ଷ/ସ' ବେଭାର୍ କରୁଛନ୍, ଦୁହି 'ଜ/ଯ' ବେଭାର୍ କରୁଛନ୍, ଜେନ୍ତା ଉଡିଆ ଥିଁ ହେସି । ତ, ଆରୁ ଦଲେ 'ଈ, ଊ, ଐ, ଔ, ଙ, ଞ, ଯ, ଳ, ଶ, ଷ' ଆରୁ 'ଃ' ଇତ୍ୟାଦି ଉଡିଆ ଲିପିର୍ ବର୍‌ନଁମାନ୍‌କୁଁ ବେଭାର୍ ନେଇଁ କର୍‌ବାର୍ । ଇତାର୍ କାରନ୍ କାଣାଁ ଆରୁ ଇ ଥିର୍ କେନ୍ କଥା ଠିକ୍ ଆଏ ?

(ଅବସରପ୍ରାପ୍ତ ପ୍ରଧାନ ଶିକ୍ଷକ ଶ୍ରୀଯୁକ୍ତ ବିପିନ ବିହାରୀ ଦାଶ, ପରା, ବିଜେପୁର, ବରଗଡ଼) ।

ଉତ୍‌ତର୍ :

୧୯୮୦ ପାଖାପାଖି ଆରୁ ତାର୍ ଉତାରୁଁ ଆମର୍ ବିଦ୍ୱାନ୍‌ମାନ୍‌କର୍ ଭିତ୍‌ରେଁ ସ୍ୱାଭିମାନର୍ ବନ୍‌ଏ ଚେତ୍‌ନାଁଟେ ଉବିର୍‌ଲା । ତେହିଁ ଥିଲା,

୧) ଆମର୍ ମାତ୍ରୁଭାସା ସମଲ୍‌ପୁରି ଆଏ । ଉଡିଆ ଆମର୍ ରାନିଁ ମାଁ ଆଏ, ନେଇଁ ତ ବଡ୍‌ଖା ମାଁ ଆଏ, ନେଇଁ ତ ଗୁରସ୍ ପିଆସି ଧାଇମାଁ ଆଏ ।

୨) ଇ ଦୁହି ଭାସା ଭିତ୍‌ରେଁ ଅନେକ୍ ତଫାତ୍ ଅଛେ । ସେ ତଫାତ୍ ଆମେଁ

ଜେତ୍‌କି ଦେଖେଇ ପାରମାଁ ଆମର୍ ଲେଖିବାର୍ ଥିଁ, ଗିତ୍-କବିତା-ନାଟକ୍-କଥାନିଁ-ଆଲୋଚନାଁ-ପ୍ରବନ୍ଧ ଇତ୍ୟାଦି ସାହିତ୍ୟ ଥିଁ ସେତ୍‌କି ଆମର୍ ଭାସା ପ୍ରତିସ୍‌ଠିତ୍ ହେବା ।

ମାଁ, ମାତ୍ରୁଭୁମିଁ, ମାତ୍ରୁଭାସା ବଲ୍‌ବାର୍ ଟା ଗୁଟେ ବଢେ ସ୍ୱାଭିମାନର୍ କଥା ଆଏ । ଇମାନ୍‌କର୍ ବିସେ ନଁ କିଏ ଜଦି ଇମାନ୍‌କୁଁ ତଲ୍ କରିଁ କଥାଟେ କହେଲା କି କେନ୍‌ସି କଥାକେ ଜଦି ବାଆନିଁନେଲା ବଏଲେଁ ମନ୍ ହୁର୍‌ଗୁନିଁ ହେସି ଆରୁ ଜବ୍‌ତକ୍ କିଛି ଗୁଟେ ବାଟ୍ ନେଇଁ ମିଲ୍‌ବା, ଝୁମ୍‌ରା ନେଇଁ ଲାଗେ ।

ଡକ୍‌ଟର୍ ମାୟାଧର୍ ମାନ୍‌ସିଙ୍ଗ୍ ଗଙ୍ଗାଧର୍ ମେହେର୍ କଲେଜର୍ ପ୍ରିନ୍‌ସିପାଲ୍ ଥିଲା ବେଲ୍‌କେ 'ଶଂଖ' ବଲିଁ ତାକର୍ ଗୁଟେ ପତ୍ରିକା ଥିଁ ନାକ୍‌ଫୋଡି ପନ୍‌ଡାକର୍ 'ପାସ୍‌ରି ଦେବୁ କାଏଁ ନ' ବଲିଁ ସମଲ୍‌ପୁରି କବିତାଟେ ୧୯୪୪ ମସିହା ନଁ ଛପେଇ ଥିଲେ । ମାନ୍‌ସିଙ୍ଗ୍ ହଉଛନ୍ କବି ହିସାବେଁ ଜେତ୍‌କି ଦରନ୍ଦି, ମୁନୁସ୍ ହିସାବେଁ ଭି ହେତ୍‌କି ଗୁଣଁଗ୍ରାହି । ବିଦ୍ୱାନ୍ ନିଲମଣିଁ ବିଦ୍ୟାରତ୍‌ନଁ ଇ କବିତାକେ ପଢିଁ କରିଁ ବଏଲେ, ଇ ଟା ଉଡିଆ ଭାସାର୍ କେତ୍‌ନିଁକେତେ ବିକ୍ରୁତ୍ ଆରୁ କଦର୍ଜ ରୁପ ଆଏ । 'ଶଂଖ ' ବାଗିର୍ ପତ୍ରିକା ଥିଁ ଏନ୍ତା କଦର୍ଜ ଭାସା ଥିଁ ଲେଖା ହେଲା କବିତା ନେଇଁ ଛପା ହେବାର୍ କଥା ଇତ୍ୟାଦି । (ଇ କଥା ଡକ୍‌ଟର୍ କେସବ୍ ଚନ୍ଦ୍ର ମେହେର୍ ଆମ୍‌କୁଁ କହିଥିଲେ) ।

ଇହାଦେ ତ କେନିର୍ କଥା କେନ୍‌କେ ଗଲାନିଁ । ଖାଲି ଝାଡୁଆପଡାର୍ ଆରଣ୍ୟକ ରଙ୍ଗମନ୍‌ଚ ନଁ ଇ ଭିତ୍‌ରେଁ ଏକ୍‌ସେ-ବଡ୍‌କର୍-ଏକ୍ ସ ସ ନାଟକ୍ ଦେଖା ହେଲାନିଁ । ପ୍ରୁଥିବିର୍ କେନ୍‌ସି ବି ଭାସାର୍ କବିତାମାନ୍‌କର୍ ସାଙ୍ଗେଁ ଟକର୍ ଦେବା ବାଗିର୍ କବିତା ଲେଖାହଉଛେ ଆରୁ ପଢାହଉଛେ ଆମର୍ ଭାସା ଥିଁ । ତଥାବି, ଉଡିଆ ଥିଁ ଜେନ୍ତା ଲେଖାହେସି ଅବିକଲ୍ ଆମେଁ ହେନ୍‌ତା ଲେଖ୍‌ମାଁ ବଏଲେଁ ଇହାଦେ ବି ଅନେକ୍ ଅନ୍‌ସମଲ୍‌ପୁରିଆ ବିଦ୍ୱାନ୍ ବନ୍ଧୁ ସମଲ୍‌ପୁରି-କୁସ୍‌ଲିକେ ନିଲମଣିଁ ବିଦ୍ୟାରତ୍‌ନଁ କହେଲା ବାଗିର୍ ଉଡିଆର୍ ବିକ୍ରୁତ୍ ରୁପ ଆଏ ବଲିଁ କହେବେ । ହେନ୍‌ତେହି ତ ଆମର୍ ଭାସାକେ ଉଡିଆର୍ ଉପଭାସା ଆଏ ବଲିଁ କହୁଛନ୍ । ଆମର୍ ସ୍ୱାଭିମାନ୍‌କେ ବାଧୁଛେ । ସମଲ୍‌ପୁରିଆ-କୁସ୍‌ଲିଆ ଇତାର୍ ସମାଧାନ୍

ନୁଗୁଛେ ।

ଇ କଥା ୧୯୮୦ ବେଲ୍‌କେ ଆରୁ କେନ୍ତା ଥିବା ଚିନ୍‌ତା କଲେଁ ଖାଲି ଭିତ୍‌ରେଁ ଭିତ୍‌ରେଁ ଜାନ୍‌ଇଁ ହେବା । ଜାଣାଁ ସବୁ ସୁନ୍‌ବାକେ ମିଲୁଥିଲା ହେଁ ସବୁ ହେଲା, ଉଡିଆର୍ 'ଳ'କେ 'ଲ' କଲେଁ, 'ଣ'କେ 'ନ' କଲେଁ, ଠାନ୍ ଜାନିଁ କରିଁ କେନଁ କେନ୍ତା ହଲନ୍ତ ଗୁଟେ ଲେଖା ଅରୁ ଚନ୍ଦ୍ରବିନ୍ଦୁ ଗୁଟେ ଲେଖା ଲଗାଦେଲ୍ ଗଲେଁ, ହେଁ ଟା ସମଲ୍‌ପୁରି ହେବା । ଅରୁ କାଁଣାଁ ? ହେଁ ଥିଁ ଫେର୍ କେନ୍ତା କରିଁ କହେମାଁ ଜେ ସମଲ୍‌ପୁରି ଗୁଟେ ଅଲ୍‌ଗା ଭାସା ଆଏ ?

ତେହେଗୁଁ ଭାବ୍‌ବାକେ ପର୍‌ଲା । ଅନେକ୍ ଚିନ୍‌ତା କର୍‌ବାକେ ପର୍‌ଲା । ବିଚାର୍ କରାଗଲା ଜେ ମାତୃଭାସା ସମଲ୍‌ପୁରି-କୁସ୍‌ଲିର୍ ଧ୍ୱନିଁତତ୍ୱ ଜାନ୍‌ବାକେ ପର୍‌ବା । ତେହିର୍ ଧ୍ୱନଁଗ୍ରାମ୍ ଆରୁ ଉପଧ୍ୱନିଁମାନ୍‌କୁଁ ନେଇଁ କରିଁ ଗୁଟେ ବର୍‌ନଁମାଲା ତିଆର୍ କର୍‌ବାକେ ପର୍‌ବା । ତେହିଁ ଆମେଁ ଜେନ୍‌ତା କହୁଛୁଁ ସେନ୍‌ତା ଲେଖାଜିବା । ଖୁସିର୍ କଥା ଜେ ଏତ୍‌କି ବେଲ୍‌କେ ସମଲ୍‌ପୁରି-କୁସ୍‌ଲି ଧ୍ୱନିଁତତ୍ୱକେ ନେଇଁ କରିଁ ଗବେସଣାଁ ବି ଚାଲିବସ୍‌ଲା । ସମଲ୍‌ପୁରେଁ ଜେନ୍ ବାହାରୁଥିଲା ଦଇନିକ୍ ଖବର୍ କାଗଜ୍, '**ହୀରାଖଣ୍ଡ, କୋଶଳ, ଅଗ୍ନିଶିଖା**' ଇତ୍ୟାଦି ଆରୁ ସମଲ୍‌ପୁର୍ ବିସ୍ୱବିଦ୍ୟାଲୟର୍ '**ସପ୍ତର୍ଷି**' ଆଦି ପତ୍ରିକାମାନ୍‌କେଁ ସମଲ୍‌ପୁରି ଭାସା-ସାହିତ୍ୟ-ସଁସ୍‌କୃତିକେ ନେଇଁ କରିଁ ନାନାପ୍ରକାର୍ ଲେଖା ବି ବାହାରିବସ୍‌ଲା । ଆମର୍ ଭାସାର୍ ବିଦ୍ୱାନ୍‌ମାନେଁ ପରସ୍‌ପର୍ ପରସ୍‌ପର୍‌କେ ତହଁକେଇ ବସ୍‌ଲେ ।

ଜେନ୍‌ମାନେଁ ଇଙ୍ଗ୍‌ଲିସ୍ ଭାସା ଥିଁ ସମଲ୍‌ପୁରି-କୁସ୍‌ଲି ଭାସାର୍ ଗବେସଣାଁ କଲେ ସେମାନେଁ International Phonetic Association (୧୮୮୯) ସବୁ ଭାସାର୍ ଲାଗିଁ ଜେନ୍ ବର୍‌ନଁମାଲା(IPA) ବନେଇଛେ, ପାଗୁଁ ପର୍‌ଜନ୍ତେ ଟାଇପ୍ ମିସିନର୍ ରୋମାନ୍ ଲିପିକେ ନେଇଁ କରିଁ ନିଜର୍ ଭାସାର୍ ଲାଗିଁ ଠିକ୍ ବରନଁମାଲାଟେ ବନାଲେ । ଇ ଟା ହେଲା ବିଲ୍‌କୁଲ୍ ଭାସାବିଗ୍ୟାନର୍ ନିଅମ୍ ଅନ୍‌ସାରେଁ । ପରତି ଧ୍ୱନିଁଗ୍ରାମ୍ ଦୁସ୍‌ରା ସବୁ ଧ୍ୱନିଁଗ୍ରାମ୍ ନୁଁ ଫରକ୍ ଆଏ ବଲିଁ ପ୍ରମାଣ୍ କରାଗଲା । ଇ ହିସାବେଁ ସମଲ୍‌ପୁରି-କୁସ୍‌ଲି ଭାସାର୍ ସବୁ ଧ୍ୱନିଁଗ୍ରାମ୍ ଆରୁ ଗୁଟା କେତେ ଉପଧ୍ୱନିଁର୍ ଲାଗିଁ ଗୁଟେ ଗୁଟେ ବର୍‌ନଁ ନେଇଁ କରିଁ ଆମର୍ ଭାସାର୍ ଲାଗିଁ

ବରନ୍‌ମାଲାଟେ ଠିକ୍ କରାଗଲା । ସେ ଟା ହଉଛେ,

ସ୍ୱର ବରନ୍ : i e ɛ a ə o u

ବ୍ୟଞ୍ଜନ୍ ବରନ୍ : p ph b bh m (mh)
t̪ t̪h d̪ d̪h n nh
ʈ ʈh ɖ ɖh (ɽ) (ɽh) ɳ (ɳh)
c ch j jh ɲ (ɲh)
k kh g gh ŋ (ŋh)
r rh
l lh
s h (w) y

ଅନୁନାସିକ ଚିନ୍‌ହା : ~

ଉପଧ୍ୱନି ସବୁ ବନ୍‌ଧନି ଭିତ୍‌ରେ ଦିଆହଇଛେ ।
ଧନିଗ୍ରାମ୍ ହିସାବେ,

ସ୍ୱର ବରନ୍ ହେଲା - ୭
ବ୍ୟଞ୍ଜନ୍ ବରନ୍ ହେଲା - ୩୩
ଉପଧ୍ୱନି ହେଲା -୭
ଅନୁନାସିକ ଚିନ୍‌ହା -୧
ଆରୁ ସବୁ ହଇ ହେଲା -୪୮ ।

ଇ ଆଇପିଏ (IPA) ଆରୁ ରୋମାନ୍ ଲିପି ନୁଁ ବନାଲା ବରନ୍‌ମାଲା ହଉଛେ ଗବେସକ ଆରୁ ବିଦ୍ୱାନ୍‌ମାନ୍‌କର୍ । ଇ ଭାସାର୍ କବି, ଲେଖକ, ନାଟ୍ୟକାର୍, କଥାନିକାର୍‌ମାନ୍‌କର୍ ଲାଗି କଥା ହେଲା, ଜେ ଜେନ୍ ଲିପି ଥିଁ ଲେଖୁଛେ ସେ

ଲିପିର୍ ବର୍ନଁମାନ୍‌କୁଁ ନେଇଁ କରିଁ ସେ ଗୁଟେ ବର୍ନଁମାଲା ତିଆର୍ କରୁ ଆରୁ ସେ ଜେନ୍ତା କହୁଛେ ସେନ୍ତା ଲେଖୁ ।

ଆମେଁ ଜେନ୍‌ମାନେଁ ଉଡିଆ ଲିପିର୍ ବର୍ନଁମାନ୍‌କର୍ ଦୁଆରା ସମଲ୍‌ପୁରି-କୁସ୍‌ଲି ଥିଁ ଲେଖୁଛୁଁ, ସମଲ୍‌ପୁରି-କୁସ୍‌ଲି ଭାସାର୍ ଧ୍ୱନିଁଗ୍ରାମ୍ ହିସାବେଁ ଉଡିଆ ଲିପିର୍ ଜେନ୍ ଜେନ୍ ବର୍ନଁ ଦର୍‌କାର୍ ସେ ସବୁ ନଉଁ । ତାର୍ ବାହାରେଁ ବି ଦେଖ୍‌ମାଁ ଜେ କେତେଟା ଧ୍ୱନିଁଗ୍ରାମ୍ ଆରୁ ଉପଧ୍ୱନିଁ ରହିଁଯିବା, ଜେନ୍ ଥିର୍ ଲାଗିଁ ଆମ୍‌କୁଁ କେତେଟା ବର୍ନଁ ବନାବାକେ ପର୍‌ବା । ସେନ୍ତା ହିସାବେଁ ଆଇପିଏ(IPA) ନୁଁ ବନାଲା ବର୍ନଁ ସାଙ୍ଗେଁ ଉଡିଆ ଲିପି ନୁଁ ନେଇଁ କରିଁ ବନାଲା ବର୍ନଁ ସବୁ ହେବା,

ସ୍ୱର୍‌ବର୍ନଁ : i e ɛ a ə o u
ଇ ଏ ଏ଼ ଆ ଅ ଓ ଉ

ବ୍ୟଞ୍ଜନ୍‌ବର୍ନଁ : p ph b bh m (mh)
ପ ଫ ବ ଭ ମ (ମ୍ହ) (ମ୍‌ହ)

t̪ t̪h d̪ d̪h n nh
ତ ଥ ଦ ଧ ନ ନ୍ହ (ନ୍‌ହ)

ʈ ʈh ɖ ɖh (ɽ) ɽh ɳ (ɳh)
ଟ ଠ ଡ ଢ (ଡ଼) (ଢ଼) ଣ (ଣ୍ହ) (ଣ୍‌ହ)

c ch j jh ɲ (ɲh)
ଚ ଛ ଜ ଝ ଞ୍ଜ (ଞ୍ଝ)

k kh g gh ŋ (ŋh)
କ ଖ ଗ ଘ ଙ୍ଗ (ଙ୍ଘ)

r ɽh l lh
ର ର୍ହ (ର୍‌ହ) ଲ ଲ୍ହ (ଲ୍‌ହ)

s h (ɦ) y
ସ ହ (ହ୍ୱ) ୟ

ଚିନ୍‌ହା : ଁ ˎ

ସୁଚ୍ନାଁ :

୧)   ସବୁ ହଇଁ ସତ୍‌ଚାଲିସ୍‌ଟା ବର୍ନଁ ଅରୁ ଦୁଇଟା ଚିନ୍‌ହାଁ, ସ୍ୱର ବର୍ନଁମାନ୍‌କର୍ ମାତ୍ରା ଆରୁ ବ୍ୟଞ୍ଜନଁ ବର୍ନଁମାନ୍‌କର୍ ଫଲା ସବୁ ଜେତ୍‌କି ଦର୍‌କାର୍ ସେତ୍‌କି ବେଭାର୍ କରାଜାଇପାରେ ।

୨)   ବନ୍‌ଧନିଁ ଭିତ୍‌ରେଁ ଉପଧ୍ୱନିଁ ଆରୁ ବିକଲ୍‌ପ ବର୍ନଁମାନ୍‌କୁଁ ଲେଖାହଇଛେ ।

୩)   ରୋମାନ୍ ଲିପିର୍ ବ୍ୟଞ୍ଜନଁ ବର୍ନଁ ସବୁ ଧ୍ୱନିଁଗ୍ରାମ୍ ହିସାବେଁ ଥିଲା ବେଲ୍‌କେ ଉଡିଆ ଲିପିର୍ ବ୍ୟଞ୍ଜନଁ ବର୍ନଁମାନ୍‌କେଁ ଧ୍ୱନିଁଗ୍ରାମ୍ ସାଙ୍ଗେଁ [ଅ] ଲଗାହଇଛେ । (କ୍ + ଅ = କ, ଖ୍ +ଅ = ଖ ଇତ୍ୟାଦି) । ସବ୍‌ଦ ସଙ୍ଗଠନ୍ କଲା ବେଲ୍‌କେ [ଅ] ଠାନେଁ ଦୁସ୍‌ରା ଦୁସ୍‌ରା ସ୍ୱର ଧ୍ୱନିଁମାନ୍‌କୁଁ ବି ଲଗାଜାଏସି । ଏନ୍ତା ବର୍ନଁମାନ୍‌କୁଁ ଅଖର୍‌ମାଲା (Syllabary) ବଲିଁ କହେସନ୍ । ଇ ଅଖର୍‌ମାନ୍‌କୁଁ ଧ୍ୱନିଁଗ୍ରାମ୍ ହିସାବେଁ ବେଭାର୍ କର୍‌ବାକେ ହଲନ୍ତ [ ୍ ] ବେଭାର୍ କରାଜାଏସି । ତେହିର୍ ଲାଗିଁ ଉଡିଆ କି ଦେବ୍‌ନାଗ୍‌ରି ଲିପି ବେଭାର୍ କଲେଁ ଆରୁ ଗୁଟେ ଅଏଦ୍‌କା ଚିନ୍‌ହାଁ ଇ ହଲନ୍ତ [ ୍ ]ର୍ ଦର୍‌କାର୍ ହେସି ।

ନିଜର୍ ଭାସା-ସାହିତ୍ୟ-ସଁସ୍‌କ୍ରୁତିକେ ନେଇଁ କରିଁ ତାର୍ ସ୍ୱାଭିମାନ୍ ଉପ୍‌ରେଁ ଜେତେବେଲେଁ ଦୁକ୍ ପୁହୁଁଚିସି, ଘାଏ ଘାଏ ସେ ବିଚ୍‌ରା ବଡା ପ୍ରତିକ୍ରିୟା ଦେଖାସି । ଭାସାର୍ ଅଲଗ୍‌ପନ୍ ବତଉନ୍ ବତଉନ୍ ବଡା କଡା କଥା ବି କହିଁନେସି । ଜେନ୍ତା, ୧୯୮୨ ମସିହା ନଁ ସ୍ରିଜୁକ୍ତ ଦେବାନନ୍ଦ୍ ହୋତା **ବୋଲି ନୁହେ ଭାସା** ବଲିଁ ବହିଟେ ପ୍ରକାସ୍ କଲେ । ସମଲ୍‌ପୁରି-କୁସ୍‌ଲି ଭାସାକେ ଲେଖିଛନ୍ ଦେବ୍‌ନାଗ୍‌ରି ଲିପି ଥିଁ । ତାକର୍ କହେବାର୍ କଥା ହେଲା ଆମର୍ ମାତ୍ରୁଭାସା ସମଲ୍‌ପୁରି-କୁସ୍‌ଲି ଆଏ, ଉଡିଆ ନହେସେ । ଆମର୍ ସଁସ୍‌କ୍ରୁତି ବି ସମଲ୍‌ପୁରି ଆଏ, ଉଡିଆ ନହେସେ । ଆମର୍ ଖାନାଁପିନାଁ-ପିନ୍‌ହାଉଡ୍‌ହା-ତିହାର୍‌ବାହାର୍-ନାଚ୍‌ଗିତ୍ ସବୁ କିଛି ଅଲ୍‌ଗା ଆଏ ବଲିଁ ଜାହା ପାରିଛନ୍ ପ୍ରମାଣ୍ କର୍‌ବାର୍ ଚେସ୍‌ଟା କରିଛନ୍ । ହେନ୍ତା, ପନ୍‌ଡିତ୍ ପ୍ରୟାଗ୍‌ଦତ୍‌ତ ଜୋସି ବି '**ସପ୍ତର୍ଷି** ମାର୍ଚ୍ଚ-ଏପ୍ରିଲ୍ ୧୯୯୦' ଥିଁ ଲମ୍-କଲମ୍ ପ୍ରବନ୍‌ଧ ଟାକେଁ ଇ ଭାସାର୍ ଅଲ୍‌ଗା ନାଁଟେ ଦେଲେ କୋସ୍‌ଲି ବଲିଁ ଆରୁ ଇତାର୍ ଲିପି ବି ଦେବ୍‌ନାଗ୍‌ରି କରାଜଉ ବଏଲେ । ଇ ସ୍ୱାଭିମାନ୍‌କେ ସ ସ

ଜୁହାର୍ ! ବାକି, ଇ ପ୍ରତିକ୍ରିୟାକେ ଅବିସ୍ ନମ୍ର ଭାବେଁ ବିଚାର୍ କର୍‌ବାକେ ପର୍‌ବା ।

ଦେବ୍‌ନାଗ୍ରି ହଉ କି ଓଡିଆ ହଉ କି ଆଇପିଏ ହଉ କି ରୋମାନ୍ ହଉ, ସମଲ୍‌ପୁରି-କୁସ୍‌ଲିକେ ଜେନ୍ ଲିପି ଥିଁ ଲେଖ୍‌ଲେଁ ବି କିଛି ଫରକ୍ ନେଇଁ ପଡେ । ଗୁଟେ ଭାସାକେ ଅନେକ୍ ଲିପି ଥିଁ ଲେଖାଜାଇପାରେ । ଖାଲି, ଲେଖ୍‌ନେଁବାଲା ଆରୁ ତାର୍ ପାଠକ୍‌ମାନେଁ ହିଁ ବଏଲେଁ ହେଲା । ସଁସ୍କୃତ୍ ଭାସାକେ ପୃଥିବିର୍ ପ୍ରାୟ୍ ସବୁ ଲିପିର୍ ସାଢି ପିନ୍‌ହା ହଇଛେ ଆରୁ ଜେନ୍ ସାଢି ପିନ୍‌ହାଲେଁ ବି ଆଇମାଁ ବୁଢି ଜେନ୍ତାକେ ସେନ୍ତା । କିଛି ବି ଫରକ୍ ନେଇଁ । ଇ ବିସେ ନଁ ଅନେକ୍ ଆଲୋଚନାଁ ହଇସାରିଛେ । (ସମଲ୍‌ପୁରି ଅଖର୍- ୧ ୯ ୯ ୩, ସମଲ୍‌ପୁରି ବର୍‌ନଁମାଲା- ୧ ୯ ୯ ୫, ସମଲ୍‌ପୁରି ଧ୍ୱନିଁତତ୍ୱ ଆରୁ ବର୍‌ନଁମାଲା- ୧ ୯ ୯ ୯ , ଇତ୍ୟାଦି) ।

ଇ ନଁ ତେହିର୍ ଗୁଟେ କଥା କହେଲେଁ ହେବା । ଛତିସ୍‌ଗଡ୍ ଆରୁ ଝାର୍‌ଖଁଣ୍ ରାଏଜ୍‌ମାନ୍‌କେଁ ଆମର୍ ଭାଏ-ବହେନ୍‌ମାନେଁ ଅଛନ୍ । ସେମାନ୍‌କର୍ ଭିତ୍‌ରୁଁ ବି ଅନେକ୍ ସମଲ୍‌ପୁରି-କୁସ୍‌ଲି ଥିଁ ଘାଏ ଘାଏ ଲେଖୁଛନ୍ । ହିନ୍‌ଦି ହଉ କି ଛତିସ୍‌ଗଡି ହଉ, ସାଦ୍ରି ହଉ କି ସମଲ୍‌ପୁରି-କୁସ୍‌ଲି ହଉ, ଜେନ୍ ଭାସା ଥିଁ ଲେଖ୍‌ଲେଁ ବି ଦେବ୍‌ନାଗ୍ରି ଲିପି ଥିଁ ଲେଖ୍‌ଲେଁ ତାହାକୁଁ ସୁବିଧା ହେସି । ଇ ଆଡେଁ ଆମର୍ ଠାନେଁ ବି ଅନେକ୍ ବନ୍‌ଧୁ ଅଛନ୍, କେତେବେଳେଁ କେନ୍ତା ଦେବ୍‌ନାଗ୍ରି ଥିଁ ଲେଖୁଛନ୍ । ଜେନ୍ତା କି, ଇ ଭିତ୍‌ରେଁ ବଲାଙ୍ଗେର୍ ନୁଁ ଜେନ୍ ବାହାରୁଛେ **ଡକୁଆ**,ତାର୍ ନଭେମ୍ବର୍ ୨ ୦ ୦ ୭ ସଙ୍ଗ୍‌ଖ୍ୟା ଥିଁ ଦେବ୍‌ନାଗ୍ରି ବେଭାର୍ କରାହଇଛେ । କବି ରାମ୍‌ଭକ୍ତ ଫରିକାର୍ ତାକର୍ କବିଁତା ସଙ୍ଗ୍‌କଲନଁ **ବେନ୍ଦରା ଫୁଲ୍**( ୨ ୦ ୧ ୦ ) ବି ଦେବ୍‌ନାଗ୍ରି ଥିଁ ଲେଖିଛନ୍ ।

ହଉ ! ଜେନ୍ ଲିପି ବେଭାର୍ କରାହେବା ହଉ । ବାକି ଆମର୍ ଭାସାର୍ ଧ୍ୱନିଁଗ୍ରାମ୍‌କେ ନେଇଁ କରିଁ ଜେନ୍ ବର୍‌ନଁମାଲା ହଉଛେ ସେ ଟା ବେଭାର୍ କଲେଁ ସବୁ ଠାନେଁ ସମାନ୍ ହେବା ଆରୁ ଠିକ୍ ହେବା । କିଛି ଫରକ୍ ନେଇଁ ହଏ । ନାଗ୍ରି ଲିପି ଥିଁ ଜଦି ଲେଖାଜିବା ତାର୍ ବର୍‌ନଁମାଲା ହେବା,

ସ୍ବର୍ ବର୍ନ୍ : i e ɛ a ɔ o u
इ ए ऐ आ अ ओ उ

ବ୍ୟଞ୍ଜନ୍ ବର୍ନ୍ : p ph b bh m (mh)
प फ ब भ म (म्ह)

t th d dh n nh
त थ द ध न न्ह

ʈ ʈh ɖ ɖh (ɽ) (ɽh) ɳ (ɳh)
ट ठ ड ढ (ड़) (ढ़) ण (ण्ह)

c ch j jh ɲj (ɲjh)
च छ ज झ ञ्ज (ञ्झ)

k kh g gh ŋ (ŋh)
क ख ग घ ङ (ङ्घ)

r rh l lh
र र्ह ल ल्ह

s h (w) y
स ह (व) य

ଚିନ୍ହା : ~ ----
ँ \

ଇ ନଁ ବି ହେଁ ସତ୍‌ଚାଲିସ୍‌ଟା ବରନ୍ଁ ଆରୁ ଦୁଇଟା ଚିନ୍‌ହାଁ । ଏତ୍‌କି ଜେ, ଉଡିଆ ଲିପି ନଁ ଗୁଟେ 'ଏ' ଚିନ୍‌ହାଁ ଦୁହି 'ଏ'ର୍ କାମ୍ କରବା ଅରୁ ଅସୁବିଧା ନେଇଁ ହଏ । ତାର୍ କାରନ୍ ହେଲା, ଇ ଦୁହି ଧ୍ୱନିଁ ଗୁଟେ କିସ୍‌ମର୍ ଆଁନ୍, ତଫାତ୍ ଖାଲି ଅଧାବନ୍ଦ୍-ସାମ୍‌ନାଁର୍ ଆରୁ ଅଧାମେଲା-ପଚ୍‌କୁଡିର୍ ଆଏ (half-close-front and half-open-back articulation) । ଜେନ୍ତା କି, ଝନେକେ ଡାକ୍‌ଲେଁ ଆମେଁ ସାମ୍‌ନାଁର୍ 'ଏ' ବେଭାର୍ କରସୁଁ /ହଏବୋ, ଏ ହରି/ । କେନ୍‌ସି କଥା ଥିଁ ଆସ୍‌ରିଜ୍ ହେଲେଁ ପଚ୍‌କୁଡିର୍ 'ଏ' ବେଭାର୍ କରସୁଁ /ଏ, ହେନ୍ତା କଥା ଆଏ / ଇତ୍ୟାଦି । ତେହେଗୁଁ ନାଗ୍‌ରି ଲିପିର୍ ଜେନ୍ ଜେନ୍ ବରନ୍ଁ ନିଆହଇଛେ, ହେଁମାନ୍‌କର୍ ମାତ୍ରା ଆରୁ ଫଲା ବି ଜେନ୍ ନଁ ଦରକାର୍ ନିଆଜିବା ।

ସେସ୍‌କେ :

ତ, ଏନ୍ତା କଲେଁ ଆମର୍ ଭାସାମାଁର୍ କାଏଁ ଲାବ୍ ହେବା ? ଜେନ୍‌ମାନେଁ ଇ ଭାସା ଥିଁ ସାହିତ୍ୟ ବଂନଉଛନ୍, ଲେଖାଲେଖି କରୁଛନ୍, ତାକର୍ କାଣାଁ ସୁବିଧା ହେବା ?

୧) ଆମର୍ ଭାସାର୍ ଧ୍ୱନିଁଗ୍ରାମ୍ ଆରୁ ଉପଧ୍ୱନିଁମାନ୍‌କର୍ ଚିନ୍‌ହାଁମାନ୍‌କୁଁ ନେଇଁ କରିଁ ଲେଖିବାର୍ ଟା ବିଗ୍ୟାନ୍‌ସମ୍‌ମତ୍ ଆଏ ।

୨) ଆମେଁ ଜେନ୍ତା କହେସୁଁ, ବହୁତ୍ ପାଖାପାଖି ସେନ୍ତା ଲେଖିପାର୍‌ମାଁ ।

୩) ଇ ନଁ ବର୍‌ନାଁସୁଦ୍‌ଧି ବଲ୍‌ବାର୍ ଜିନିସ୍‌ଟେ ବିଲ୍‌କୁଲ୍ ନେଇଁ ହଏ ।

୪) ଭାସାର୍ ଇ ଧ୍ୱନିଁଗ୍ରାମ୍‌ସୁଚକ୍ ବର୍‌ନଁମାଲା ଥିଁ ଲେଖିଲେଁ, ଭାସା ସିଖିବାକେ, ପଡ୍‌ଭାକେ, କହେବାକେ ସବୁ ଠାନେଁ ସହଜ୍ ଆରୁ ସରଲ୍ ହେବା ।

ଇ ଥିର୍ ଲାଗିଁ ଆଏଜ୍‌କେ ଚଉତିରିସ୍ ବରସ୍ ହେଲାନଁ ଭିନ୍‌ଭିନ୍ ସଭାମାନ୍‌କେଁ ଇ କଥା ପକାଜଉଛେ, ଆଲୋଚନାଁ ବି ହଉଛେ । ଭିନ୍‌ଭିନ୍ ଠାନେଁ ଇ ଥିର୍ chart ବି ବଅଁଟା ହଇଛେ । ସୁଖର୍ କଥା, ଅନେକ୍ ଲେଖକ୍ ବନ୍‌ଧୁ ଇ ଜୁକ୍ତିକେ ବୁଝିଁ କରିଁ ଏନ୍ତା ଲେଖିବାର୍ ଧାରାକେ ଅପ୍‌ନାଲେନଁ ଆରୁ ଇ ବିଗ୍ୟାନ୍‌ସମ୍‌ମତ୍ ବର୍‌ନଁମାଲା ଥିଁ ତାକର୍ ସାହିତ୍ୟ ବନାତେଲ୍ ଜଉଛନ୍ । ମାଁ ସମ୍‌ଲେଇ ସମ୍‌କୁଁ ଆସିର୍‌ବାଦ୍ କରୁ !

# ୪

# ଉଡିଆ ଲିପିର୍ ସବୁ ବରନ୍ ବେଭାର୍ କଲେଁ କାଁଣାଁ ହେବା

ପ୍ରସ୍ନ :

ଆମର୍ ସଁସ୍କୃତି, ଆମର୍ ପରମ୍ପରାର୍ ରେକଡ୍ ହଉଛେ ସଁସ୍କୃତ୍ ଭାସା । ଇ ଭାସାକେ ସିଖ୍ବାକେ ଉଡିଆ ଲିପିର୍ ବାବନ୍ଟା ଯାକ ସବୁ ବରନ୍ ତ ସିଖ୍ବାକେ ପଡ୍ବା । ସମଲ୍ପୁରି-କୁସ୍ଲି ଥିଁ ଲେଖ୍ଲା ବେଲ୍କେ ହେଁ ସବୁ ବେଭାର୍ କଲେଁ କାଏଁ ଫରକ୍ ପଡ୍ବା ?

(ସରତ୍ ଚନ୍ଦ୍ର ପାଢି, ଗଉର୍ ଗାଁ, ନିଲ୍ଜି (ଭଟ୍ଲି), ବର୍ଗଡ୍)

ଉତ୍ତର୍ :

ସଁସ୍କୃତ୍ ଲାଗିଁ ଉଡିଆର୍ ବାବନ୍ଟା ବରନ୍ ସାଙ୍ଗେଁ ଆରୁ ବି ଅନେକ୍ ସିଖ୍ବାକେ ପର୍ବା । ଅନେକ୍ ସନ୍ଜୁକ୍ତ ବରନ୍- ଦୁଇଟିକିଆ, ତିନ୍ଟିକିଆ, ଚାଏର୍ଟିକିଆ ଇତ୍ୟାଦି ବି ସିଖ୍ବାକେ ପର୍ବା । 'ପଣ୍ଡିତ ଗୋପୀନାଥ ନନ୍ଦଶର୍ମା **ଓଡ଼ିଆ ଭାଷାତତ୍ୱ** (୧୯୯୫)' ଥିଁ ଇ ରକ୍ମର୍ ଅଖର୍ମାନ୍କୁଁ 'ଗ୍ରନ୍ଥାକ୍ଷର' ବଲିଁ

କହିଛନ୍ ଆରୁ ଉଡିଆର୍ ଲାଗିଁ ଅନାବସ୍ୟକ୍ ବଲିଁ ବି ବିଚାର୍ କରିଛନ୍ । ଇ କଥା 'ଡକ୍ଟର ଧନେଶ୍ୱର ମହାପାତ୍ର' ତାକର୍ '**ଓଡ଼ିଆ ଧ୍ୱନିତତ୍ତ୍ୱ ଓ ଶବ୍ଦସମ୍ଭାର** (୧୯୭୬)' ବହି ନଁ ବି ଆଲୋଚନାଁ କରିଛନ୍ । ସେସ୍କେ ସେ କହୁଛନ୍, "ଏହି ଲିପିଗୁଡ଼ିକ ଆମ ଭାଷାରେ ଅନାବଶ୍ୟକ ହେଲେ ମଧ୍ୟ ସଂସ୍କୃତ ଲିପିମାଳା ଅନୁସାରେ ଚାଲିଛି" (ସେ ବହିର୍ ୩୧ ପୁସ୍ଠା) ।

ତାର୍ ବାହାରେଁ ସଁସ୍କ୍ରୁତ୍ ଲାଗିଁ ଦେବ୍ନାଗରି ଲିପି ବି ସିଖିବାକେ ପଡ଼୍‌ବା । ଉଡିଆ 'ଳ' ଆରୁ 'ଋ'-ମାନ୍କର୍ ଉଚ୍ଚାରଣଁ ସଁସ୍କ୍ରୁତ୍ ଲାଗିଁ ଫେର୍ ଅସୁବିଧା ଆଏ । ସେ ଟା ବି କେନ୍ତା ହେବା ଜାନ୍ବାକେ ପଡ଼୍‌ବା ।

ଅନାବସ୍ୟକ୍ ବର୍ନଁ ସବୁ ଆମେଁ ଜଦି ବେଭାର୍ କର୍‌ମାଁ, ଜେନ୍ ଫରକ୍ ପଡ଼୍‌ବା ଆରୁ ଜାଏଁ ଜାଏଁ ଅସୁବିଧା ହେବା ତହୁଁନ୍ କେତେଟା ହେଲା,

୧) ସମଲ୍‌ପୁରି-କୁସ୍‌ଲି ଥିଁ ଲେଖିଲା ବେଲ୍‌କେ ଉଡିଆ ଲିପିର୍ ବାବନ୍‌ଟା ଜାକ ସବୁ ବର୍ନଁ ବେଭାର୍ କଲେଁ ଉଡିଆ ଥିଁ ଜେନ୍ ଅସୁବିଧା ସବୁ ହଇଁଅଉଛେ ହେଁ ସବୁ ସମଲ୍‌ପୁରି-କୁସ୍‌ଲି ଥିଁ ବି ହେବା । /କୃସକ/ ବଲ୍‌ମାଁ ଆରୁ ଲେଖିମାଁ /କୃଷକ/, /ସିବ/ ବଲ୍‌ମାଁ ଆରୁ ଲେଖିମାଁ /ଶିବ/, /ଗୁପାଲ୍/ ବଲ୍‌ମାଁ ଆରୁ ଲେଖିମାଁ /ଗୋପାଳ/, /କୋସଲ୍/ ବଲ୍‌ମାଁ ଆରୁ ଲେଖିମାଁ /କୋଶଳ/, /ଉଡିଆ/ ବଲ୍‌ମାଁ ଆରୁ ଲେଖିମାଁ /ଓଡ଼ିଆ/ । ଉଡିଆ ଥିଁ ଜେନ୍‌ତା ହେସି ଜଦି ଆମେଁ ସମଲ୍‌ପୁରି-କୁସ୍‌ଲି ଥିଁ ବି ହେନ୍‌ତା ଲେଖିମାଁ ବଏଲେଁ ଏନ୍ତା ବିଭ୍ରାଟ୍ ହେବା । **ଜେନ୍ ଭାସାର୍ ନିଅମ୍ ସେ ଭାସାର୍ ଲାଗିଁ ଆଏ ।** ଉଡିଆ ଭାସାର୍ ନିଅମ୍ ସମଲ୍‌ପୁରି-କୁସ୍‌ଲି ଥିଁ କି ସମଲ୍‌ପୁରି-କୁସ୍‌ଲି ଭାସାର୍ ନିଅମ୍ ଉଡିଆ ଥିଁ ଲଗାଲେଁ ନେଇଁ ହଏ ।

୨) କେନ୍‌ସି ଭାସା ଥିଁ ତାର୍ ଧ୍ୱନିଗ୍ରାମ୍ ଆରୁ ସଫା ସୁଭୁଥିବାର୍ ଉପଧ୍ୱନି ଜେତେ ଅଛେ ସେ ନୁଁ କମ୍ ବର୍ନଁ ନେଇଁ କରିଁ ସେ ଭାସାକେ ଜଦି ଲେଖାଜାଏ, ବଏଲେଁ ଇଙ୍ଗ୍‌ଲିସ୍ ଭାସା ଥିଁ ଜେନ୍‌ତା ଭୁଲ୍ ଉଚ୍ଚାରଣଁ ଆରୁ ବର୍ନାଁସୁଦ୍‌ଧି ହେବାର୍ ସମ୍ଭାବନାଁ ଅଛେ ହେନ୍ତା ହେବା । ଇଙ୍ଗ୍‌ଲିସ୍ ଭାସାର୍ ଦୁଇଟିକିଆ ସ୍ୱର ଧ୍ୱନିଗ୍ରାମ୍‌ମାନ୍‌କୁଁ ଛାଡିଁ କରିଁ ଛତିସ୍‌ଟା ଧ୍ୱନିଗ୍ରାମ୍ ଲାଗିଁ ଛବିସ୍‌ଟା ବର୍ନଁ ଅଛେ । ଉଡିଆ ଭାସାର୍ କଥା ତାର୍ ଉଲ୍‌ଟିଆ ଆଏ । କମ୍ ଧ୍ୱନିଗ୍ରାମ୍ ଆରୁ ଜହ ବର୍ନଁ । ଉଡିଆର୍ ଛତିସ୍/

ଅଡ୍‌ତିରିସ୍‌ଟା ଧ୍ୱନିଁଗ୍ରାମ୍ ଲାଗିଁ ବର୍‌ନଁ ହେଲା ବାବନ୍ । ତେହିର୍ ଲାଗିଁ ବି ସେ ଭୁଲ୍ ହେସି । ଆମର୍ ଭାସାର୍ ଧ୍ୱନିଁଗ୍ରାମ୍ ଆରୁ ଉପଧ୍ୱନିଁ ମିସିଁ କରିଁ ସତ୍‌ଚାଲିସ୍‌ଟା । ଆମେଁ ଜଦି ସେତ୍‌କିଟା ବର୍‌ନଁ ନେଇଁ କରିଁ ଆମର୍ ଭାସାକେ ଲେଖ୍‌ମାଁ ବଏଲେଁ ଭୁଲ୍ ଉଚ୍‌ଚାରଣଁ ଆରୁ ବର୍‌ନାଁସୁଦ୍‌ଧି ନେଇଁ ହଏ ।

୩) ଆମର୍ ଭାସାର୍ ଲାଗିଁ ଅନାବସ୍ୟକ୍ ବର୍‌ନଁ ସବୁ ବେଭାର୍ ନେଇଁ କଲେଁ ଆମେଁ ଜେନ୍‌ତା କହେମାଁ ହେନ୍ତା ଲେଖ୍‌ମାଁ । ନେହେଲେଁ, କହେମାଁ ପାଖେ ଅରୁ ଲେଖ୍‌ମାଁ ପାଖେ ।

୪) ଉଡିଆ ଲିପିର୍ ଅନେକ୍ ବର୍‌ନଁ ସମଲ୍‌ପୁରି-କୁସ୍‌ଲି ଭାସାର୍ ଧ୍ୱନିଁତତ୍ତ୍ୱ ଅନ୍‌ସାରେଁ ସମଲ୍‌ପୁରି-କୁସ୍‌ଲିର୍ ଲାଗିଁ ଅନାବସ୍ୟକ୍ ଆଏ । ଉଡିଆ ଥିଁ ଜେନ୍ତା ବେଭାର୍ ହଉଛେ ସେନ୍ତା ସମଲ୍‌ପୁରି-କୁସ୍‌ଲି ଥିଁ ବି ବେଭାର୍ କଲେଁ, ଆମର୍ ଅଲଗ୍‌ପନ୍ ଆରୁ ସ୍ୱାଭିମାନ୍ ଜଖମ୍ ହେବା । ସବୁ ନୁଁ ବଡ୍ ଫରକ୍ ହଉଛେ ଇ ଟା ।

ବିଚାର୍ :

ଇ ସବୁ ଥିର୍ ଲାଗିଁ ଆମେଁ ଉଡିଆ ସିଖୁଁ କି ସଁସ୍‌କ୍ରୁତ୍, ହିନ୍ଦି ସିଖୁଁ କି ଇଙ୍ଗ୍‌ଲିସ୍, ଜେନ୍ ଭାସା ବି ସିଖୁଁ ସେ ଭାସାକେ ଜେନ୍ ଲିପି ଥିଁ ଲେଖାଜାଏସି ଆରୁ ଜେନ୍‌ତା ଭାବେଁ ଲେଖାଜାଏସି, ସେନ୍ତା ଆମ୍‌କୁଁ ସିଖ୍‌ବାକେ ପଡ୍‌ବା । ତେହିର୍ ଲାଗିଁ ନିଜର୍ ଭାସାକେ ଦୁସ୍‌ରା ଭାସାର୍ ଛାଁଚ୍ ଥିଁ ପକାବାର୍ ଟା ଠିକ୍ ନହେସେ । ନିଜର୍ ଭାସା ତାର୍ ନିଅମ୍ ଅନ୍‌ସାରେଁ ଜେତ୍‌କି ସରଲ୍, ସହଜ୍ ଆରୁ ଜୁକ୍ତିଜୁକ୍ତ ହଇପାରେ, ଆମେଁ ତେହିର୍ ବିଚାର୍ କର୍‌ବାର୍ ଉଚିତ୍ । ଗବେସଣାଁ କରିଁ କରିଁ ଜେନ୍ ତଥ୍ୟ ସବୁ ମିଲୁଛେ ତାର୍ ବେଭାର୍ କର୍‌ବାର୍ ଟା ଉଚିତ୍ କଥା ଆଏ ।

# ୫
# ନାଁମାନ୍‌କେଁ ଥିଲା ବର୍‌ନ୍‌ ଆରୁ ମାତ୍ରା

ପ୍ରସ୍‌ନ୍‌ :

ଆମେଁ ଜଦି 'ଈ, ଊ, ଶ, ଷ, ଯ' ଇତ୍ୟାଦି ବର୍‌ନ୍‌ମାନ୍‌କୁଁ ବେଭାର୍‌ ନେଇଁ କର୍‌ମାଁ, ଆମର୍‌ ନାଁମାନ୍‌କେଁ ହେଁ ସବୁ ଜେନ୍‌ ଅଛେ ହେଁ ଟା କେନ୍ତା କର୍‌ମାଁ ? 'ଶ୍ୟାମ ସୁନ୍ଦର ଧର'କେ 'ସାମ୍‌ ସୁନ୍ଦର୍‌ ଧର' କଲେଁ କି 'ନୀଲ ମାଧବ ପାଣିଗ୍ରାହୀ'କେ 'ନିଲ୍‌ ମାଧବ୍‌ ପାଣିଗ୍ରାହି' କଲେଁ ଅସୁବିଧା ନେଇଁ ହଏ କାଏଁ ?

(ଅଧ୍ୟାପକ ଡକ୍ଟର ଶ୍ୟାମ ସୁନ୍ଦର ଧର (ବାରୁବାବୁ), ସମ୍ବଲପୁର)

ଉତ୍‌ତର୍‌ :

ଗୁଟେ ପ୍ରସ୍ତାବ୍‌ ହେଲା ଜେ ଆମର୍‌ ଭାସାର୍‌ ଧ୍ୱନିଁତତ୍ୱର୍‌ ନିଅମ୍‌ ହିସାବେଁ ଆମର୍‌ ଭାସା ଥିଁ ଜେତ୍‌କିଟା ଧ୍ୱନିଁଗ୍ରାମ୍‌ ଅରୁ ଫଟିକ୍‌ ଉପଧ୍ୱନିଁ ଅଛେ, ଓଡିଆ କି ନାଗ୍‌ରି ଲିପିର୍‌ ସେତ୍‌କିଟା ବର୍‌ନ୍‌ ଦୁଆରା ଆମର୍‌ ଭାସାକେ ଲେଖ୍‌ଲେଁ,

୧) ଆମର୍‌ ଭାସା ଥିଁ ବର୍‌ନାଁସୁଦ୍‌ଧି ନେଇଁ ହଏ,

୨) ଆମେଁ ଜେନ୍‌ତା କହୁଛୁଁ ପ୍ରାୟ୍‌ ସେନ୍‌ତା ଲେଖି ପାର୍‌ମାଁ,

୩) ଆମର୍‌ ଭାସା ଥିଁ ଲେଖ୍‌ବାକେ, ପଡ୍‌ଭାକେ ଆରୁ ତାହାକେ ସିଖ୍‌ବାକେ ସରଲ୍‌, ସହଜ୍‌ ଆଉର୍‌ ଜୁକ୍‌ତିଜୁକ୍‌ତ ହେବା ଆରୁ

୪) ସବୁ ନୁଁ ବଡ୍‌ କଥା ହେଲା ଆମର୍‌ ଭାସାର୍‌ ଅଲ୍‌ଗା ପରିଚୟଟେ ଧିରେ ଧିରେ

ଫଟିକ୍ ହେବା ଆରୁ ଆମର୍ ସ୍ୱାଭିମାନ୍ ବି ଏନ୍ତା ବର୍‌କସ୍ ହେବା ଜେ ଆମ୍‌କୁଁ ଏକ୍ ନମର୍ ସାହିତ୍ୟ ବନାବାକେ ଆଉର୍ ତହଁକ୍ ମିଲ୍‌ବା ।

ଇହାଦେ ଜେନ୍‌ମାନେଁ ଆମର୍ ଭାସା ଥିଁ ସାହିତ୍ୟ ବନଉଛନ୍ ତହୁଁନ୍ ଦଲେ ଇ କଥାକେ ଅନୁଭବ୍ କଲେନଁ ଆରୁ ପାରୁଁ ପର୍‌ଜନ୍ତେ ଇ ଧ୍ୱନିଁଗ୍ରାମ୍‌ସୁଚକ୍ ବର୍‌ନଁମାଲା ବେଭାର୍ କରୁଛନ୍ । ଆରୁ ଦଲେ ଉଡିଆ ଥିଁ ଜେନ୍ତା ଲେଖା ହେସି ହେନ୍ତା ଲେଖୁଛନ୍ । ଖାଲି 'ଳ' ବର୍‌ନଁ ଟାକେ ବେଭାର୍ ନେଇଁ କରନ୍ । ଆରୁ ଦଲେ ଜେନ୍ତା ବି ଲେଖୁନ୍ ଇତାର୍ ଭଲ୍‌ଅସାର୍ ବିଚାର୍ କରୁଛନ୍ । ସେନ୍‌ତା ଗୁଟେ କଥାର୍ ବିଚାର୍ ହଉଛେ ଇ ପ୍ରସ୍‌ନଁ ଆରୁ ତାର୍ ଉତ୍‌ତର୍ ।

ମୁଲ୍ କରୁଛେଁ ନିଜର୍ ଅନୁଭୁତି ନୁଁ । ଅଠାବନ୍ ବରସ୍ ହେଲା ଉତାରୁଁ ସବୁ ଦିଗୁଁ ଏତ୍‌କେଁ ସ୍ୱାଧିନ୍ ହେଲିଁ ବଲିଁ ଜେନ୍‌ତା ଭାବ୍‌ଲିଁ କି ଏନ୍‌ତା ବୁଝାମାନେଁ ଆସିଁ କରିଁ ଲଦିଁ ହେଲେ ଜେ ଇ ଲେଖା ପଢାର୍ ଅଁଟା ଭାଙ୍ଗିଁଗଲା । ବାପ୍‌ଅଜା ଜେନ୍ ଜମିନ୍‌ବାଡି, ଘର୍‌ଦୁଆର୍, ଗଚ୍‌ଖୁଟ୍, ଗାଏଗରୁ କରିଥିଲେ, ହେଁ ସବୁ ବେଁକେଁ ମାନ୍ଦଲ୍ ପର୍‌ଲା ବାଗିର୍ ଉଲେଇଁ ହେଲେ । ଗତେଁ ଗତେଁ ବାଜୁ ଭାଏଲ୍ ବିସୁରିହା ବାଜୁ, ବଜାବାକେ ପର୍‌ଲା ।

ଜୁଲାଇ ମାସେଁ ଚାସି ପରିଚୟ ପତ୍ର ବନାବାକେ ଆର୍. ଆଇ. ଆଗ୍ୟାଁକର୍ ନିକେ ଜିବାକେ ହେଲା । ଫୁସ୍‌ଫୁନିଁ ଉତାରେଁ ଜେନ୍ ମାଲ୍‌ଗୁଜାରି ଦିଆ ହଉଥିଲା, ହେତ୍‌କି ବେଲ୍‌କେ ଦେବାକେ ହେଲା । ତେହେରୁଁ ଆର୍. ଆଇ. ଆଗ୍ୟାଁ ଗୁଟେ ରେଜିସ୍‌ଟର୍ ଥିଁ ଆମର୍ ଗାଁର୍ ପୁସ୍‌ଠା ବାହାର୍ କଲେ । ମୋର୍ ନାଁ, ଖାତାର୍ ନାଁ, ଜମିଁ କେତେ ଇତ୍ୟାଦି ସବୁ ଲେଖ୍‌ଲେ ଆରୁ ମତେ ଦସ୍‌କତ୍ କର୍‌ବାକେ କହେଲେ । କଲିଁ । ଜେନ୍ତା ଦସ୍‌କତ୍ କର୍‌ସିଁ ଉଡିଆ ଥିଁ ହେନ୍ତା କଲିଁ । 'ହୃଦମଣି ପ୍ରଧାନ' । ତେହେରୁଁ ଆଗ୍ୟାଁ ମୋର୍ ଆଡ୍‌କେ ଦେଖ୍‌ଲେ । ମୁଇଁ ତାକର୍ ଆଡ୍‌କେ ଦେଖ୍‌ଲିଁ । କଥା ହେଲୁଁ ।

ଆଗ୍ୟାଁ – ରେକଡ୍‌ରେ ପଧାନ ଅଛି ।

ନିଜେଁ – ମୋର୍ ବାପ୍ ଅଜା ସଭେ ତ ଦସ୍‌କତ୍ କଲେଁ ପ୍ରଧାନ ଲେକ୍‌ସନ୍ । ମୁଇଁ ତ ଇ ଟା ମୋର୍ ପିଲା ଦିନୁଁ ଦେଖିଁଅଉଛେଁ ।

ଆଗ୍ୟାଁ – (ଆଗ୍ୟାଁ ଉପକୁଲିଆ ଆନ୍) ହଁ ମଁ ! ଆମ ପଟେ ପ୍ରଧାନ କରନ୍ତି । ଏ ପଟେ ପଧାନ କରନ୍ତି । ସେଇ ଏକା କଥା । କିନ୍ତୁ ରେକଡ୍‌ରେ ଯେମିତି ଅଛି ସେମିତି ହେବା ଉଚିତ ।

ନିର୍ଜେ – ଆପଣ୍ ଠିକ୍ କହୁଛନ୍ । କେନ୍ତା କର୍‌ମାଁ ଇହାଦେ ?

ଆଗ୍ୟାଁ – ଚଳିବ । ଆପଣ ଯେମିତି ଦସ୍ତଖତ କରୁଛନ୍ତି କରିବେ । ଆଉ କ'ଣ ?

ମନେଁ ମନେଁ ତାହାକୁଁ ଜୁହାର୍ କଲିଁ । ମାହାପୁରୁକେ ବି ଜୁହାର୍ କଲିଁ । ହାଏ ଲାଗ୍‌ଲା । ଘର୍‌କେ ଫିର୍‌ଲା ବେଲ୍‌କେ ବାରୁବାବୁକର୍ କ'ଥା ଭାବ୍‌ତେଲ୍ ଭାବ୍‌ତେଲ୍ ଅଉଥାଏଁ ।

ଦୁଇ ମାସ୍ ଉତାରୁଁ ଫେର୍ ଆର୍. ଆଇ. ଆଗ୍ୟାଁକର୍ ନୁଁ ଜେତେବେଲେଁ ପରିଚୟ ପତ୍ର ଆନ୍‌ଲିଁ, ଫେର୍ ସେନ୍ତା ହେଲା । ଚାସି ହଉଛେ 'ପଧାନ' ଅରୁ ହେଁ ଚାସି ଦସ୍‌କତ୍ କରିଛେ ତେହିଁ 'ପ୍ରଧାନ' । କଥା ଟା କାଣାଁ ହଉଛେ ଆରୁ ଦୁଇ ଚାଏର୍ ମାସ୍ ଉତାରୁଁ ଦେଖ୍‌ମାଁ ।

ଡିସେମ୍ବର୍–ଜାନୁଆରି ବେଲ୍‌କେ ଧାନ୍ ମଡାମୁଡି ସଏଲା ଆରୁ ଜାହା ମିଲ୍‌ଲା ଠୁଲେଇଁ ଠୁଲା କରିଁ ବିକ୍‌ବାର୍ ବତ୍‌ରିଆ ହେଲା । ଏଭେଁ ସର୍‌କାରି ରେଟ୍ ଥିଁ ଧାନ୍ ବିକ୍‌ବାକେ ହେଁ ଚାସି ପରିଚୟ ପତ୍ର ଦର୍‌କାର୍ । ସେ ଥିଁ ଜେତ୍‌କି ବସ୍ତା ଲିଖା ହଇଥିବା ହେତ୍‌କି ବସ୍ତାର୍ ଲାଗିଁ ଠିକ୍ ରେଟ୍ ମିଲ୍‌ବା । ଧାନ୍ ଅଏତ୍‌କା ଥିଲେଁ ଦୁସ୍‌ରା କିଛି ଗୁଟେ କର୍‌ବାକେ ହେବା । ଆଏଜ୍ କାଏଲ୍ ସର୍‌କାର୍ ଗୁଟେ ଗୁଟେ ମାର୍‌କେଟ୍ ୟାଡ୍ ଖୁଲିଛେ । ସେନ୍‌କେ ଧାନ୍ ନେବାକେ ପର୍‌ବା । ପରିଚୟ ପତ୍ର ଥିଁ ଲେଖାବାକେ ପର୍‌ବା । ତେହେରୁଁ ରସିଦ୍‌ଟେ ବି ମିଲ୍‌ବା । ଧାନ୍ ଆରୁ ରସିଦ୍ ନେଇଁ କରିଁ ଜେନ୍ ମିଲ୍ ନଁ ଦେବାକେ ଥିବା ସେନ୍‌କେ ନିଆଜିବା । ହିସାବ୍‌କିତାବ୍, ନାପ୍‌ଜୁକ୍, କେତେ କାଣାଁ ହେବା । ତେହେରୁଁ ମିଲ୍ ନୁଁ ଚେକ୍ ଦୁଇଟା ମିଲ୍‌ବା, ଧାନର୍ ଦାମ୍ ଆରୁ ଆନ୍‌ବାର୍ ଖର୍‌ଚା ଇତ୍ୟାଦି ।

ତ, ଇ ସବୁ ଧନ୍‌ଦା ମୋର୍ ଦୁଆରା ଜେତେବେଲେଁ ନେଇଁ ହେଲା, ଝନ୍‌ଏ ମଧ୍ୟସ୍ଥିକେ ଧଏଲିଁ ଆରୁ କରାଲିଁ । ସେ ବାବୁ ଚେକ୍ ଆନିଁ କରିଁ ଦେଲେ । ଚେକ୍ ନଁ ଜେନ୍ ନାଁ ଲେଖାହଇଛେ ସେ ଟା ଚାସିର୍ ନାଁ ଆଏ, Padhan ।

ଦସ୍‌କତ୍ ଥିଁ ଅଛେ Pradhan । ଆର୍. ଆଇ. ଆଗ୍ୟାଁ ତ ଚଲ୍‌ବା ବଲିଁ କହିଥିଲେ ଜାଏସିଁ ତ ବେଁକ୍‌କେ ବଏଲିଁ ଆରୁ ଗଲିଁ । Pay-in slip ଥିଁ ସବୁ ଲେଖ୍‌ଲିଁ ଆରୁ ସେ ସବୁ ଠିକ୍ ଅଛେ କି ନିଁ ଜାନ୍‌ବାକେ ଜେତେବେଲେଁ କାଉନ୍‌ଟର୍ ନିଁ ଦେଖାଲିଁ, ସେ ବାବୁ ମତେ ଦେଖିଁକରିଁ ହଁସ୍‌ଲେ । ଚିନ୍‌ହାର୍ ଲୋକ୍ ବଲିଁ ହଁସ୍‌ଲେ, ନେହେଲେଁ କାଁ ବଲିଁ ଗାଲି ଦେଇଥିତେ କି କାଣାଁ କରିଥିତେ ଜେ ମାହାପୁରୁ ଜାନ୍‌ଏ ! ବଏଲେ, ଆପଣ୍ ଜେନ୍ ଚେକ୍ ଆନ୍‌ଇଛନ୍ ସେ ଟା ଦୁସ୍‌ରା ଝନ୍‌କର୍ ଟା ଆଏ । ଦେଖୁନ୍, ବରଗ ତ ଭୁଲ୍ ଅଛେ ଅଛେ, ନାଁର୍ ବନାନ୍ ବି ଭୁଲ୍ ଅଛେ । ଚେକ୍ ଦୁହିଟା ସନ୍‌ସୋଧନ୍ କରିଁ ଆନ୍‌ବାକେ କହେଲେ । ମୁହୁଁକେ ଆମେଲ୍ କରିଁ ଫିର୍‌ଲିଁ । ଫେର୍ ସେ ମଧ୍ୟେସ୍ଥି ବାବୁକେ ଧଏଲିଁ । ତାହାକୁଁ ସବୁ କଥା କହେଲିଁ । ସେ ବି ହଁସ୍‌ଲେ । ପନ୍‌ଜାବି ମୁନିମ୍ ଆଏ । ତେହିର୍ ଲାଗିଁ ଏନ୍‌ତା ଲେଖିଛେ ବଏଲେ । ଚକେ ଘୁର୍‌ଲେଁ ବାର ହାତ୍ । ପଏସା ପଉଁନ୍ ପଉଁନ୍ ଲାଗ୍‌ଲା ଆରୁ ଡେଡ୍ ମାସ୍ ।

ଚେକ୍ ଥିଁ ଲେଖା ହଇଥିଲା ମୋର୍ ନାଁ Hurdamani Padhan (ହୁର୍ଦମଣିଁ ପଧାନ୍) । ମୁଇଁ ଲେକ୍‌ସିଁ Hrudamani Pradhan (ହୃଦମଣି ପ୍ରଧାନ) । ମୁଇଁ ଜେନ୍ ଟା ଲେକ୍‌ସିଁ ହେଁ ଟା ହଉଛେ ଖାନ୍‌ଟି ଓଡିଆ ଆରୁ ଚେକ୍ ଥିଁ ଜେନ୍ ଟା ଥିଲା ହେଁ ଟା ହଉଛେ ଖାନ୍‌ଟି ସମଲ୍‌ପୁରି-କୁସ୍‌ଲି, ଜଦିର୍ବା ଝନ୍‌ଏ ପନ୍‌ଜାବି ମୁନିମ୍ ଲେଖିଛନ୍ । ଇ ଥିର୍ ଧ୍ୱନିଁତତ୍ତ୍ୱକେ ଆଏବାର୍ ଆଗୋ ଆରୁ ଗୁଟେ କଥାର୍ ମଜା ନଉଁନ୍ ।

ଥରେ ପ୍ରଫେସର୍ ଜଗ୍‌ଦିସ୍ କୁଅଁର୍ ସିନେମାଁ ଦେଖି ଜେଇଥିଲେ । ଏନ୍ତା କିଛି ଗୁଟେ ଫିଲିମ୍ ହଇଥିବା ଜେନ୍ ନିଁ କଥାନିଁ ଥିଁ ହିଁସାଅହଁକାର୍, ରାଗ୍‌ରିସ୍‌ମିଁ, ମାର୍‌ପିଟ୍, ବଦ୍‌ଲା ନେବାର୍ ଆଦି ଜିନିସ୍ ଜହ ନେଇଁଥାଏ । ସତ୍ୟଜିତ୍ ରାଏକର୍ **ପାଥେର୍ ପାନ୍‌ଚାଲି**, ରାଜ୍ କପୁର୍‌କର୍ **ଜାଗ୍‌ତେ ରହୋ** କି ହୁର୍‌ସିକେସ୍ ମୁଖର୍‌ଜିକର୍ **ବାବର୍‌ଚି** ବାଗିର୍ ଗୁଟେ ହଇଥିବା । ଫିଲିମ୍ ସଏଲା । ହଲ୍ ନୁଁ ବାହାରିଲେ ସଭେ । ଦେଖନ୍‌ହାରିକର୍ ଭିତ୍‌ରେଁ କୁଅଁର୍ ବାବୁକର୍ ଝନ୍‌ଏ ସର୍‌ଦାର୍‌ଜି ବନ୍ଧୁ ଥିଲେ । ଫିଲିମ୍ କେନ୍ତା ଲାଗ୍‌ଲା ବଲିଁ କୁଅଁର୍ ବାବୁ ପଚ୍‌ରାଲେ ଜେତେବେଲେଁ, ସର୍‌ଦାର୍‌ଜି ବଏଲେ, "ଠିକ୍ ହାଏ, ମଗର୍, ଇସ୍ ମେଁ କ୍ୟା

ସଟୋରି ହାଏ ଭଇଆ ?"

ହେତ୍‌କି ବେଲେଁ ତ ହସିଁ ହସିଁ ଅଥା । ପଛେଁ ଜେତେବେଲେଁ କୁଅଁର୍ ବାବୁ ଇ କଥା ମତେ କହେଲେ, ଅବିସ୍ ଆମେଁ ବି ହଁସ୍‌ଲୁଁ । ବାକି ଇହାଦେ ଜନାଁ ପରୁଛେ ସେ ସଟୋରିର୍ କଥା ।

ସର୍‌ଦାର୍‌ଜିକର୍ ପନ୍‌ଜାବି ଭାସା ଥିଁ, [ସ୍ + ଟ = ସ୍ଟ] ବେଭାର୍ ନେଇଁ ହେବାର୍ ବଲିଁ, ସ୍ଟୋରିକେ ସେ /ସଟୋରି/ ବଲି କହୁଛନ୍ । ଆମର୍ ଭାସା ଥିଁ [ସ୍ଟ], ସବ୍‌ଦର୍ ପହେଲା ଅଖ୍ୟରେଁ ନେଇଁ ବେଭାର୍ ହଏ ବଲିଁ ଆମେଁ ଜଦି ଆମର୍ ଭାସା ଥିଁ ଇ ସବ୍‌ଦକେ ବେଭାର୍ କର୍‌ମାଁ ତାହାକେ ବଲ୍‌ମାଁ /ଇସ୍‌ଟୋରି/, ଜେନ୍‌ତା /school/କେ ଆମର୍ ଭାସା ଥିଁ ବେଭାର୍ କଲେଁ ବଲ୍‌ସୁଁ /ଇସ୍‌କୁଲ୍/ ।

ପନ୍‌ଜାବି ମୁନିମ୍ ତାକର୍ ଭାସା ଥିଁ ଜେନ୍‌ତା ହେସି ହେନ୍ତା କରିଛନ୍ । ସବ୍‌ଦର୍ ମୁଲ୍ ନଁ [hru-] ନେଇଁ ଲେଖିଁ କରିଁ [hur-] କରିଛନ୍ । ଆମର୍ ଭାସା ଥିଁ ବି ହେନ୍ତା ହେସି । ସଁସ୍‌କ୍ରୁତ୍ ଭାସା ଥିଁ 'ର' ବର୍‌ନ୍‌ର୍ ଉଚ୍‌ଚାରଣଁ [ରି] ହେସି । ଉଡିଆ ଥିଁ ହେଁ ଟା [ରୁ] ହେସି । ଇ [ରୁ], ସବ୍‌ଦର୍ ପହେଲା ଅଖ୍ୟରେଁ ଥିଲେଁ ଆମର୍ ଭାସା ଥିଁ [ଉର୍] ହେସି ।

| [ରୁ | → | ଉର୍] |
|---|---|---|
| ଉଡିଆ | | ସମଲ୍‌ପୁରି-କୁସ୍‌ଲି |
| ହୃଦ | - | ହୁର୍‌ଦ |
| ନୃପ | - | ନୁର୍‌ପ |
| କୃପା | - | କୁର୍‌ପା |
| ଧୃବ | - | ଧୁର୍‌ବ ଇତ୍ୟାଦି । |

ନାଆଁ ଥିଁ ବନାନ୍ ଇପାକ୍-ସେପାକ୍ କର୍‌ବାରୁଁ ମୋର୍ ଜେନ୍ତା ଅସୁବିଧା ହେଲା, ଅନ୍ୟମାନ୍‌କର୍ ବି ହେନ୍ତା ନିସ୍‌ଚେ ହେବା । ତ କେନ୍ତା କର୍‌ମାଁ ? ଝନ୍‌ଏ ବଲ୍‌ବା, ଏତେ ସୁଲ୍‌ହ-ବାର କହୁଁ ଆଏଲା, ଜେନ୍ତା ଅଛେ ହେନ୍ତା ଥଉ । ସତ୍ କଥା

ଆଏ । କେନ୍‌ସି କଥାକେ ଟେଢାମେଢା କର୍‌ବାର୍ ଅରଥ ଅସୁବିଧା ଥିଁ ପର୍‌ବାର୍ ଆଏ ।

ଏତ୍‌କି ବେଲ୍‌ତକ୍ ଆମେଁ ଉଡିଆ ହିସାବେଁ ଚଲୁଛୁଁ ଆରୁ ଜବ୍‌ତକ୍ ସମଲ୍‌ପୁରି-କୁସ୍‌ଲି ସମ୍‌ବିଧାନର୍ ଆଟ୍ ନମର୍ ସିଡୁଲ୍‌କେ ନେଇଁ ଆସିଁ, ତବ୍‌ତକ୍ ଆମ୍‌କୁଁ ପୁର୍‌ନାଁ ହିସାବେଁ ଚଲ୍‌ବାକେ ପଡ଼୍‌ବା । ଇହାଦେ ବି ଇସ୍‌କୁଲେଁ ଆମର୍ ପୋ-ଝିକର୍ ନାଁ ଲେଖାଲେଁ /ଧୁର୍‌ବା/କେ /ଧ୍ରୁବ/, /ଲାଏବାନାଁ/କେ /ଲାବଣ୍ୟ/ ଲେଖାଜଉଛେ ଆରୁ ଆମେଁ ହଁ ବି ମାରୁଛୁଁ । ଇହାଦେ ବି ଆମର୍ ପିଲେ ନିଜୁକ୍‌ତି ଅଫିସ୍ ନଁ ହଉ କି କେନ୍‌ସି ସର୍‌କାରି ଚାକ୍‌ରିର୍ ଲାଗିଁ ହଉ, ଫାରମ୍ ଭର୍‌ଲେଁ ମାତୃଭାସା ଠାନେଁ /ଓଡ଼ିଆ/ ବଲିଁ ଲେଖୁଛନ୍ । ତଥାବି, ଆମର୍ ସ୍ୱାଭିମାନ୍ ଅଛେ । ଆମର୍ ଆରୁ ଆମର୍ ଭାସାର୍ ଅଲ୍‌ଗା ପରିଚୟ ଗୁଟେ ଗୁଟେ ଅଛେ । ହେଁ ସବୁ ଆମେଁ ଜଦି ଛାଡ଼ିଁ ନେମାଁ ଆରୁ ଦୁସ୍‌ରାମାନ୍‌କୁଁ ଜଦି ନକଲ୍ କର୍‌ମାଁ, ବଏଲେଁ ମୁର୍‌ଦାର୍ ହଇଁ ଜିମାଁ । ତେହିର୍ ଲାଗିଁ ଜେତ୍‌କି ହଇପାରେ, ନିଜର୍ ଭାସାର୍ ଅଲଗ୍ ପରିଚୟକେ ନେଇଁ କରିଁ, ନିଜର୍ ଭାସାର୍ ନିଅମ୍ ଅନ୍‌ସାରେଁ ଜେନ୍ତା ହେବାର୍ କଥା ତାହାକେ ବି ବିଚାର୍‌କେ ନେଇଁ କରିଁ, ସାହିତ୍ୟ ବନାଲା ବେଲ୍‌କେ ହଉ କି ଦୁସ୍‌ରା କିଛି ଲେଖ୍‌ଲା ବେଲ୍‌କେ ହଉ ଆମେଁ ସଚେତନ୍ ହଇଁ କରିଁ ଲେଖ୍‌ବାର୍ ଉଚିତ୍ । ଇନୁଁଇନ୍‌କେ କମ୍‌ସେକମ୍ ଆରୁ ଟେଢାମେଢା ନେଇଁ କରିଁ କରିଁ /ଧୁର୍‌ବା/କେ /ଧୁର୍‌ବା/ ବଲିଁ ଲେଖୁଁ, /ଲାଏବାନାଁ/କେ /ଲାଏବାନାଁ/ ବଲିଁ ଲେଖୁଁ, /ସ୍ୟାମାଁ/କେ /ସ୍ୟାମାଁ/ ବଲିଁ ଲେଖୁଁ, /ନିଲା/କେ /ନିଲା/ ବଲିଁ ଲେଖୁଁ । **ଇହାଦେ ଆମେଁ ଗୁଟେ ଥିତି ନୁଁ ଆରୁ ଗୁଟେ ଥିତିକେ ଜଉଛୁଁ (period of transition)** । ଧିରେ ଧିରେ ନିଜର୍ ଆରୁ ନିଜର୍ ଭାସା-ସାହିତ୍ୟ-ସଁସ୍‌କୁତିର୍ ଗୁଟେ ଅତି ସୁନ୍‌ଦର୍ ଆରୁ ଚମତ୍‌କାର୍ ପରିଚୟ ପଉଛୁଁ । ସେ ସବୁର୍ ପ୍ରତିସ୍‌ଠାର୍ ଲାଗିଁ ଚିନ୍‌ତା କରୁଛୁଁ । କିଛି ଦିନର୍ ଲାଗିଁ ଅସୁବିଧା ହଇପାରେ, ବାକି, ସତ୍‌କେ ସତ୍ ବଲିଁ ମାନ୍‌ଲେଁ, ସବୁ ଦିନର୍ ଲାଗିଁ ଆମର୍ ଉତାରେଁ ଜେନ୍‌ମାନେଁ ଆଏବେ ହେଁମାନ୍‌କର୍ ଲାଗିଁ ସୁବିଧା ହିଁ ସୁବିଧା ହେବା ।

**ଗୁଟେ ଭାସାର୍ ସବ୍‌ଦଟେ, ଏନ୍ତା କି ନାଁ-ଗାଁ ବି ଜେତେବେଲେଁ ଦୁସ୍‌ରା ଭାସା ଟାକେଁ ବେଭାର୍ ହେସି, ସେ ସବ୍‌ଦ ସେ ଦୁସ୍‌ରା ଭାସାର୍**

ନିଅମ୍ ଅନ୍‌ସାରେଁ ବେଭାର୍ ହେସି । ଜେନ୍ତା, ସଁସ୍‌କ୍ରୁତ୍ ଭାସାର୍ /ପିତୃ(ପିତା), ମାତୃ(ମାତା)/ । ଇ ଦୁହି ସବ୍‌ଦ ପ୍ରାୟ ସବୁ ଭାସା ନଁ ଅଛେ । /ପିତୃ/ ସବ୍‌ଦର୍ [ପ୍] ଆରୁ /ମାତୃ/ ସବ୍‌ଦର୍ [ମ୍]ହଉଛେ ଅସଲ୍ । ଇ [ପ୍] ଆରୁ [ମ୍] ହଉଛନ୍ ହାଡର୍ ଛଁଚ୍, ମୁଲ୍(root), ଜେନ୍ ଥିଁ ଦୁସ୍‌ରା ଦୁସ୍‌ରା ଭାସାମାନ୍‌କର୍ ରକତ୍-ମଉଁସ୍ ଲଟ୍‌କିଛେ । (ଇ ବହିର୍ ୧୨୩ ପୁସ୍‌ଠା ନଁ ତାଲିକାର୍ ୧୦ ନମର୍ ବି ଦେଖୁନ୍) ।

ସଁସ୍‌କ୍ରୁତର୍ /ମାତା, ପିତା/ ଓଡିଆ ଥିଁ /ମାତା, ପିତା/, ସମଲ୍‌ପୁରି-କୁସ୍‌ଲି ଥିଁ /ମାଁ, ବାପ୍/ ଅବଧି ଥିଁ /ମାତୁ, ପିତୁ/, ଲାଟିନ୍ ଥିଁ /ମାଟର୍ (mater), ପେଟର (pater)/ ଆରୁ ଇଙ୍ଗ୍‌ଲିସ୍ ଥିଁ ସେ ଟା ଫେର୍ /ମଦର୍ (mother), ଫାଦର୍ (father)/ ହଉଛେ । ହେଁ ସବ୍‌ଦମାନ୍‌କେଁ ମାଁ ଅର୍ଥ ଥିଁ [ମ୍] ଆରୁ ବାପା ଅର୍ଥ ଥିଁ [ପ୍] ଧ୍ୱନିଁ ଗୁଟେ ଗୁଟେ ନିସ୍‌ଚେ ଅଛେ ଆରୁ ହେଁ ସବ୍‌ଦମାନ୍‌କେଁ ବାକି ସବୁ କହୁଛେ କେନ୍ ଟା କେନ୍ ଭାସାର୍ ଆଏ ।

ଆରୁ ଟିକେ ଆମର୍ ଚାରହି ଆଡ୍‌କେ ଦେଖୁଁ ଲୁକ୍‌କର୍ ନାଁ-ଗାଁ ଇତ୍ୟାଦି ଦୁସ୍‌ରା ଦୁସ୍‌ରା ଭାସାମାନ୍‌କେଁ କେନ୍‌ତା କେନ୍‌ତା ହଉଛେ ।

| ୧) <u>ଗ୍ରିକ୍ ଆରୁ ୟୁରୋପର୍ ଭାସାମାନ୍‌କେଁ ହେସି</u> | - | <u>ହିନ୍ଦି ଆରୁ ଭାରତର୍ ଭାସାମାନ୍‌କେଁ ହେସି</u> |
|---|---|---|
| ସକ୍ରେଟିସ୍ (Socrates) | - | ସୁକ୍‌ରାତ୍ |
| ଏରିସ୍‌ଟଟଲ୍ (Aristotle) | - | ଅରସ୍ତୁ |
| ଆଲେକ୍‌ଜାନ୍‌ଡର୍ (Alexander) | - | ସିକନ୍ଦର୍ |
| ସେନ୍‌ଡ୍ରୋକୋଟସ୍ (Sandrocottus) | - | ଚନ୍ଦ୍ରଗୁପ୍ତ |
| ଇଙ୍ଗ୍‌ଲିସ୍ (ଭାସା) (English) | - | ଅଙ୍ଗ୍‌ରେଜି, ଇଙ୍ଗ୍‌ରେଜି, ଇଙ୍ଗ୍‌ରାଜି |
| ଇଙ୍ଗ୍‌ଲିସ୍ (ଜାଏତ୍) (English) | - | ଇଙ୍ଗ୍‌ରେଜ୍, ଅଙ୍ଗ୍‌ରେଜ୍ |
| ଡଚ୍ (ଜାଏତ୍) (Dutch) | - | ଓଲନ୍ଦାଜ୍ ଇତ୍ୟାଦି । |

୨) ବିଖ୍ୟାତ୍ ଉଡିଆ କବି ଆରୁ ସାହିତ୍ୟକାର୍ ମାୟାଧର୍ ମାନ୍‌ସିଙ୍ଗ୍ ବିସ୍‌ବ ବିଖ୍ୟାତ୍ ନାଟ୍ୟକାର୍ ଉଇଲିଅମ୍ ସେକ୍ସପିଅର୍‌କର୍ **ଅଥେଲୋ (Othello)** ନାଟକର୍ ଉଡିଆ ଅନୁବାଦ୍ କରିଛନ୍ । ସେ ନଁ କବି ଚେସ୍‌ଟା କରିଛନ୍ ଇ ନାଟକ୍‌କେ ଗୁଟେଁମୁଟେଁ ଗୁଟେ ଦେସି ନାଟକ୍ ହିସାବେଁ ବନାବାକେ । ମୁନ୍‌ସର୍ ଭାବ୍‌ନାଁ, ଚିନ୍‌ତା ଆରୁ ତାର୍ ଦୁକ୍ ସୁକ୍ ଜେନ୍ ଟା ଆମେଁ ସାହିତ୍ୟ ଥିଁ ଅନୁଭବ୍ କର୍‌ସୁଁ, ସବୁ ଠାନେଁ, ସବୁ ସମିଆ ଥିଁ ଆରୁ ସମ୍‌କର୍ ଲାଗିଁ ହେଁ ସବୁ ସମାନ୍ ଆଏ । ତଫାତ୍ ବଏଲେଁ ନାଁ–ଗାଁ ଆରୁ ଚାଲିଚଲନ୍ । କବି ମାନ୍‌ସିଙ୍ଗ୍ ଇ ନାଟକର୍ ପାତ୍ର-ପାତ୍ରିମାନ୍‌କର୍ ନାଁମାନ୍‌କୁଁ କେନ୍‌ତା ଦେସି କରିଛନ୍ ଭାବ୍‌ଲେଁ ଆସ୍‌ରିଜ୍ ଲାଗ୍‌ସି । ଚରିତ୍ରମାନ୍‌କର୍ ଆଚରନ୍‌କେ ନେଇଁ କରିଁ , ନିଜର୍ ଭାସା ନୁଁ ସବ୍‌ଦ ବାଛିଁ କରିଁ ଆରୁ ୟୁରୋପ୍ ମହାଦେସର୍ ନାଁମାନ୍‌କର୍ ସାଙ୍ଗେଁ ଫେର୍ ମେଲ୍ ଖଉ଼ଥିବା ବି - ଇ ସବୁ କଥାକେ ବିଚାର୍‌କେ ନେଇଁ କରିଁ ନାଁ ଦେବାର୍ ଟା ନିସ୍‌ଚେ ଗୁଟେ ପ୍ରତିଭାବାନ୍ କବିର୍ କାମ୍ ଆଏ । **ଅଥେଲୋ** ନାଟକର୍ ଚରିତ୍ରମାନ୍‌କର୍ ନାଁ ଇଙ୍ଗ୍‌ଲିସ୍ କବି ସେକ୍ସପିଅର୍ ଆରୁ ଉଡିଆ କବି ମାନ୍‌ସିଙ୍ଗ୍ କେନ୍ତା କେନ୍ତା ଦେଇଛନ୍ ତହୁଁନ୍ ଗୁଟା କେତେ ହେଲା,

| <u>ସେକ୍ସପିଅର୍‌କର୍ ୟୁରୋପିଅ ନାଁ</u> | - | <u>ମାନ୍‌ସିଙ୍ଗ୍‌କର୍ ଉଡିଆ ନାଁ</u> |
|---|---|---|
| ବ୍ରାବାନ୍‌ସିଓ (Brabantio) | - | ବୀରବଂଶୀ |
| ଅଥେଲୋ (Othello) | - | ଅଟଳ |
| କେସିଓ (Cassio) | - | କାଶ୍ୟପ |
| ଇଆଗୋ (Iago) | - | ଅହିଗ |
| ରୋଡେରିଗୋ (Roderigo) | - | ରୁଦ୍ରରାଗ |
| ମନ୍‌ଟେନୋ (Montano) | - | ମଦନ |
| ଡେସ୍‌ଡିମୋନା (Desdemona) | - | ଦିପ୍ତିବର୍ଣ୍ଣା |
| ଏମିଲିଆ (Emilia) | - | ଅମ୍ବାଳିକା |
| ବିଆଙ୍କ୍‌କା (Bianca) | - | ବିଶାଖା ଇତ୍ୟାଦି । |

ଇ କଥା ଇ ନଁ (ବନ୍‌ଧୁ ଡକ୍ଟର୍ ନନ୍ଦ କିସୋର୍ ଦାସ୍‌କର୍ ସାଙ୍ଗେଁ) ସୋର୍ କର୍‌ବାର୍ ମତ୍‌ଲବ୍ ହେଲା, ପ୍ରତିଭା ଜାନିଁ ଜାନିଁ କାମ୍ କର୍‌ସି ବେଲ୍‌କେ ସୋଜ୍ ଲୁକେ ନିଜର୍ ଭାସାର୍ ସବ୍‌ଦକେ ନେଇଁ କରିଁ ନାଁମାନ୍‌କୁଁ ବି ଇପାକ୍ ସେପାକ୍ କରିଁ କହେସନ୍ । ଜେନ୍ତା, ଗୁଟେ ଭାସାର୍ /ସୀତାରାମ୍/କେ ଆର ଭାସା ଥିଁ /ସିଆରାମ୍/, /ସୀତାପତି/କେ /ସିଆବର/ ଆରୁ /କୃଷ୍ଣ/କେ /କ୍ରିଷ୍ଣ/, /କୁସ୍‌ଟାଁ/, /କିଶନ୍/ ବଲ୍‌ସନ୍; ଏନ୍ତା କି /କେଶ୍‌ଟୁ/ ତକ୍ ବି କଥା ଜାଏସି ଲୁକ୍‌କର୍ କହେବାର୍ ଥିଁ ।

୩) ଆମର୍ ଭାସାମାନ୍‌କୁଁ ନିଘା କଲେଁ ବି ଆମେଁ ଦେଖ୍‌ମାଁ ନାଁମାନ୍‌କେଁ ଭିନ୍ ଭିନ୍ ଭାସାର୍ ଭିନ୍ ଭିନ୍ ରଙ୍ଗ୍ ଢଙ୍ଗ୍ । /ଓଡ଼ିଆ/ ସବ୍‌ଦକେ ଜାଏତ୍ ହିସାବେଁ ବଙ୍ଗାଲିମାନେଁ ବଲ୍‌ସନ୍ /ଉଡ଼େ/ ଆରୁ ଭାସା ଆରୁ ଜାଏତ୍, ଦୁହି ଅର୍ଥ ଥିଁ ସମଲ୍‌ପୁରି-କୁସ୍‌ଲି ଆରୁ ଛତିସ୍‌ଗଡି ଥିଁ ବଲ୍‌ସନ୍ /ଉଡିଆ/ । ଆରୁ ଗୁଟା କେତେ ନାଁ ଦେଖୁଁ ଆମର୍ ରାଏଜର୍ ଦୁହି ଭାସାମାନ୍‌କେଁ କେନ୍‌ତା କେନ୍‌ତା ହେସି ।

| ଉଡିଆ ଥିଁ ହେସି | - | ସମଲ୍‌ପୁରି-କୁସ୍‌ଲି ଥିଁ ହେସି |
|---|---|---|
| କୋଶଳ | - | କୋସଲ୍ |
| କୋଶଳୀ | - | କୋସ୍‌ଲି/କୁସ୍‌ଲି |
| ବଲାଙ୍ଗିର/ବଲାଙ୍ଗୀର | - | ବଲାଙ୍ଗିର୍/ବଲାଙ୍ଗେର୍ |
| ସମ୍ବଲପୁର/ସମ୍ବଳପୁର | - | ସମ୍ବଲ୍‌ପୁର୍/ସମଲ୍‌ପୁର୍ |
| ସମ୍ବଲପୁରୀ | - | ସମ୍ବଲ୍‌ପୁରି, ସମଲ୍‌ପୁରି |
| ଲାବଣ୍ୟ | - | ଲାଏବାନ୍ଁ |
| ଶକୁନ୍ତଳା | - | ସୁକୁନ୍‌ତୁଲା |
| ଲଳିତା | - | ନଏଲ୍‌ତା, ନଏଲ୍‌ତ |
| ସର୍ବମଙ୍ଗଳା | - | ସର୍‌ମଙ୍ଗ୍‌ଲା |
| ଗୋବିନ୍ଦ | - | ଗୁବିନ୍ |

| | | |
|---|---|---|
| ଗୋପାଳ | – | ଗୁପାଲ୍ |
| ନାରାୟଣ | – | ନାରେନ୍ ଇତ୍ୟାଦି । |

ଇ ପ୍ରବନ୍ଧ ଭିତ୍‌ରେଁ ଆରୁ ବି ଅନେକ୍ ନାଁ ଉଡିଆ ଥିଁ କେନ୍ତା ହେସି ଆରୁ ସମଲ୍‌ପୁରି-କୁସ୍‌ଲି ଥିଁ କେନ୍ତା ହେସି ଜେ ଆଲୋଚନାଁ କରାହଇଛେ । ଇହାଦେ ଇ ସବୁର୍ ବିଚାର୍‌କେ ଆସୁଁ । ତାର୍ ସାଙ୍ଗେଁ ନିଜର୍ ଜେନ୍ ଅଲ୍‌ଗା ପରିଚୟଟେ ଅଛେ, ନିଜର୍ ଭାସାର୍ ଜେନ୍ ପରିଚୟଟେ ଅଛେ ଆରୁ ନିଜର୍ ସ୍ୱାଭିମାନ୍ ଜେନ୍‌ତା ଆମ୍‌କୁଁ ସବୁବେଲେଁ ଉଚିତ୍ କାମ୍ କର୍‌ବାକେ ତହଁକ୍ ଦଉଥିବା – ଇ ସବୁ କଥାମାନ୍‌କୁଁ ବି ବିଚାର୍‌କେ ନିଆଜଉ ।

ବିଚାର୍ ୧ :

ଭୋଟ୍ ଦେବାର୍ ଅଧିକାର୍ ପାଏବାର୍ ଉତାରେଁ ଜେଇଁ ମୁନୁସ୍ ଭାସା-ସାହିତ୍ୟ-ସଁସ୍କୃତି ସଚେତନ୍ ହଉଛେ । ସେ ଟା ଫେର୍ ଜାହାର୍ ନଁ ଜେନ୍ତା, କିଏ ଆଗୋ ସ୍ୱାଭିମାନିଁ ହଉଛେ ତ କିଏ ପଛେଁ । ନିଲ୍‌ମାଧବ୍ ପାଣିଗ୍ରାହି କି ସ୍ୟାମ୍ ସୁନ୍‌ଦର୍ ଧର କି ହୁର୍‌ଦମଣିଁ ପ୍ରଧାନ୍ ଜେତେବେଲେଁ ସମଲ୍‌ପୁରି-କୁସ୍‌ଲି ଭାସା-ସାହିତ୍ୟ-ସଁସ୍କୃତି ସଚେତନ୍ ହେଲେ, ହେତ୍‌କି ବେଲ୍‌କେ ତାକର୍ ଭିତର୍‌ମାନ୍‌କେଁ ଉଡିଆ ଭାସା-ସାହିତ୍ୟ-ସଁସ୍କୃତିର୍ ସଁସ୍କାର୍ ଖେଚାଖୋଚ୍ ଭରାହଇସାରିଥିଲା । ବାପ୍-ଅଜା ଇସ୍‌କୁଲ୍‌କେ ନେଲେ । ନିଲ୍ ମାଧବ୍ ପାଣିଗ୍ରାହିକେ 'ନୀଳ ମାଧବ ପାଣିଗ୍ରାହୀ', ସ୍ୟାମ୍ ସୁନ୍ଦର୍‌କେ 'ଶ୍ୟାମ ସୁନ୍ଦର' ଆରୁ ହୁର୍‌ଦମଣିଁକେ 'ହୃଦମଣି' ବଲିଁ ନାଁ ଲେଖାଲେ । ଇସ୍‌କୁଲେଁ, ବହିପତର୍‌ମାନ୍‌କେଁ ଆରୁ ସଭାସମିତି ନଁ ବେଭାର୍ ହେଲା ଉଡିଆ । ଆମେଁ ଉଡିଆ ଆରୁ ଆମର୍ ମାତୃଭାସା ବି ଉଡିଆ ବଲିଁ ଆମ୍‌କୁଁ ସିଖାଗଲା ।

ଇସ୍‌କୁଲ୍, ବହିପତର୍ ଆରୁ ସଭାସମିତି ବାହାରେଁ ଆରୁ ଗୁଟେ ସନ୍‌ସାର୍ ଅଛେ, ଆରୁ ଗୁଟେ ବାତାବରନ୍ ଅଛେ । ଆମର୍ ଘର୍, ଘରେଁ ଅଜା-ଆଇ, ମାଁ-ବାପ୍, ବବା-ବଡି, କକା-କାକି, ଦଦା-ନାନିଁ, ଭାଏ-ବହେନ୍ ଆରୁ ଆରୁମାନେଁ ।

ଗାଁ ଖୁଏଲ୍ ଆରୁ ଗାଁ ଖୁଲିର୍ ସବୁ କିସ୍‌ମର୍ ମାଏନ୍-ଦାଏନ୍, ଉଛବ୍-ଆନନ୍, ନାଟ୍-ତାମ୍‌ସା, ଭାଗ୍‌ବତ୍-କିର୍‌ତନ୍, ଗାନାଁ-ବାଜ୍‌ନାଁ ଆରୁ ହଜାର୍ କଥା । ହାଟେଁ ବଜାରେଁ କିସମ୍ କିସମ୍ ଜିନିସ୍ ଆରୁ କିସମ୍ କିସମ୍ ଲୋକ୍ । ଭେଟ୍-ଘାଟ୍, ଜାନ୍-ପହେଚାନ୍, ଘିନ୍‌ଆ-ବିକା, କେତେ କାଁଣାଁ । ଇ ସବୁ ଭିତ୍‌ରେଁ ଜେନ୍ ତାଜା ଭାସା ଆରୁ ତାଜା 'ଚାହାଣି, ଚଳଣି ଓ ଚମକ (ନୀଳକଣ୍ଠ ଦାସ)', ବଏଲେଁ, ସମଲ୍‌ପୁରି-କୁସ୍‌ଲି ଭାସା ଆରୁ ସଁସ୍‌କ୍ରୁତି ବଲିଁ ଜେନ୍ କଥାଟେ ଅଛେ, ସେ ଟା ଆପେଁ ଆପେଁ ଆମର୍ ଭିତ୍‌ରେଁ ଖେଚିଁ ଖେଚିଁ ଭରିଁ ହେଲା ଆରୁ ଆମର୍ ଗୁଟେ ବରକସ୍ ଅଲ୍‌ଗା ପରିଚୟଟେ ବନାଲା ।

ଇ ହିସାବେଁ ଆମର୍ ଦୁଇଟା ପରିଚୟ ଅଛେ । ଦୁସ୍‌ରା ଦୁସ୍‌ରା ରାଏଜେଁ ଆମର୍ ରାଏଜର୍ ସମ୍‌କର୍ ସାଙ୍ଗେଁ ଆମ୍‌କୁଁ ଉଡିଆ ବଲିଁ କହେସନ୍ । ତଥାବି ଆମ୍‌ପାଣିଁ ଘାଟି ନୁଁ ମୁଲ୍‌କରିଁ ଭବାନିଁପାଟ୍‌ନାଁ, ଟିଟ୍‌ଲାଗଡ୍, ବଲାଙ୍ଗେର୍, ବର୍‌ଗଡ୍, ସମଲ୍‌ପୁର୍, ରେଢାଖୋଲର୍ ଜଙ୍ଗଲ୍ ଇଲାକା ପାର୍ ହେବାର୍ ତକ୍ ଜେନ୍‌ମାନେଁ ରହେଲେ, ହେଁମାନ୍‌କୁଁ ସମଲ୍‌ପୁରିଆ ବଲିଁ ଆମର୍ ରାଏଜର୍ ଦୁସ୍‌ରାମାନେଁ କହେସନ୍ । କଲାହାଁଣ୍ଡିର୍ ମୋର୍ ସାଙ୍ଗର୍ ପ୍ରଫେସର୍ ଜୁଗଲ୍ କିସୋର୍ ଚାନ୍ଦ୍, ପ୍ରଫେସର୍ ସୁଭେନ୍ଦୁ ମୁଁଣ୍ଡ, ବଲାଙ୍ଗେରର୍ ସିରିମାନ୍ ତାରା ଭୁସନ୍ ନନ୍ଦ, ସମଲ୍‌ପୁରର୍ ପ୍ରଫେସର୍ ସୁରେନ୍ଦ୍ର ପନ୍‌ଡା ଆଦି ଆମ୍‌କୁଁ ସମ୍‌କୁଁ ଆମର୍ କଟ୍‌କିଆ-ଭୁବ୍‌ନେସରିଆ ସାଙ୍ଗ୍‌ମାନେଁ ସେନେହର୍ ସହିତ୍ ସମଲ୍‌ପୁରିଆ ବଲିଁ କହୁଥିଲେ । ଇହାଦେ ବି କହୁଛନ୍ । ତ, ଏନ୍ତା ଆମର୍ **ଉଡିଆ ପରିଚୟଟେ ବି ଅଛେ ଆରୁ ସମଲ୍‌ପୁରିଆ ପରିଚୟଟେ ବି ଅଛେ । ଆମର୍ ଉଡିଆ ପରିଚୟ ହେଲା 'ନୀଳ ମାଧବ ପାଣିଗ୍ରାହୀ, ଶ୍ୟାମ ସୁନ୍ଦର ଧର ଓ ହୃଦମଣି ପ୍ରଧାନ' । ଇ ସବୁ ଉଡିଆ ବ୍ୟାକରଣଁ ଆରୁ ଉଡିଆ ଭାସାର୍ ନିଅମ୍ ନିସ୍‌ଠା ଥିଁ ଜାଏସି । ଆମର୍ ସମଲ୍‌ପୁରିଆ(କୁସ୍‌ଲିଆ) ପରିଚୟ ହେଲା ନିଲ୍ ମାଧବ୍ ପାଣିଗ୍ରାହି, ସ୍ୟାମ୍ ସୁନ୍ଦର୍ ଧର ଆରୁ ହୁର୍‌ଦମଣିଁ ପ୍ରଧାନ୍ । ହେଁ ସବୁ ଆମର୍ ଭାସାର୍ ନିୟମ୍ ନିସ୍‌ଠା ଥିଁ ଜାଏସି ।**

ଏତ୍‌କି ବେଲ୍ ତକ୍ ସର୍‌କାରି କାଗଜ୍-ପତର୍‌ମାନ୍‌କେଁ ଆରୁ ଇସ୍‌କୁଲ୍-କଲେଜ୍‌ମାନ୍‌କେଁ ସବୁ ହିସାବ୍ କିତାବ୍ ଜେତେବେଲେଁ ଉଡିଆ ହିସାବେଁ ଥାଏ,

ଆମେଁ ଉଡିଆ ପରିଚୟର୍ ଥିତି ଥିଁ ଥିବାର୍ ତକ୍ ଆମ୍‌କୁଁ ଉଡିଆ ନାଁ ଲେଖୁଥିବାକେ ପର୍‌ବା । ଜେତ୍‌କି ବେଲେଁ ଆମେଁ ପୁରାପୁରି ଆର ଥିତିକେ ଆଏମାଁ, ସହଜ୍ ଆରୁ ସୁନ୍‌ଦର୍ ଭାବେଁ ହେଁ ନାଁମାନେଁ ସମଲ୍‌ପୁରି-କୁସ୍‌ଲି ଭାସାର୍ ଛାଁଚ୍ ଥିଁ ଲେଖିଁହେବେ । ସାହିତ୍ୟ ବନାଲା ବେଲ୍‌କେ ନାଁ-ଗାଁମାନ୍‌କୁଁ ଆମେଁ ଜେନ୍ତା କହୁଛୁଁ ସେନ୍ତା ଲେଖ୍‌ଲେଁ ଉଚିତ୍ ହେବା । ରାଜସ୍ୱ ବିଭାଗର୍ କଥା ପର୍‌ଲେଁ ରେଭେନ୍ୟୁ ରେକଡ୍ ଥିଁ ଜେନ୍ତା ଲେଖାହଇଛେ ସେନ୍ତା ଲେଖ୍‌ବାକେ ପର୍‌ବା ଆରୁ ଚାକ୍‌ରି ବାକ୍‌ରିର୍ ଲାଗିଁ ଫାରମ୍ ଭର୍‌ଲା ବେଲ୍‌କେ ସାଟିଫିକେଟ୍‌ମାନ୍‌କେଁ ଜେନ୍ତା ଅଛେ ସେନ୍ତା ତ ହେବା ହିଁ ହେବା । ଜେନ୍ ଠାନେଁ ନିହାତି ଦର୍‌କାର୍ ସେ ନଁ ଉଡିଆ ଥଉ ଆରୁ ବାକି ଠାନେଁ ନିଜର୍ ଭାସା ଥିଁ ଜଦି ଲେଖାଲେଖି କରୁଛୁଁ, ଏନ୍ତା କି ନାଁ ଗାଁ ବି ନିଜର୍ ଭାସାର୍ ନିଅମ୍ ଅନ୍‌ସାରେଁ ଲେଖାଜଉ । ଇ ନଁ ରତି ପ୍ରମାଣେଁ ଅସୁବିଧା ନେଇଁ ହଏ ।

୨ :

ବେଁକ୍, ପୋସ୍‌ଟଫିସ୍ ଆରୁ ଜେନ୍ ଜେନ୍ ଠାନେଁ ପଏସା ପତର୍ ଲେନ୍‌ଦେନ୍ ହେସି ସେ ନେଁ ଆମର୍ ପହେଚାନ୍ ଲାଗିଁ ଆମର୍ ଗୁଟାତିନ୍‌ଏ ଦସ୍‌କତ୍ ରହେସି । ଇ ଟା ଆମେଁ ଜେତେ଼ବେଲେଁ ପହେଲା ଲେନ୍‌ଦେନ୍ କର୍‌ସୁଁ ସେତେବେଲେଁ ଦିଆଜାଏସି । ପଛେଁ ମନ୍‌କେ ଲାଗ୍‌ଲେଁ ଇ ଟା ବଦ୍‌ଲାଜେଇପାରେ ବି । ଅଧା ଦସ୍‌କତ୍‌କେ ପୁରା, ପୁରା ଟାକେ ଅଧା – ଇ ଲୁକର୍ ଇଛା ଅନ୍‌ସାରୁଁ ବଦ୍‌ଲାଜେଇପାରେ । ଅସଲ୍ କଥା ହେଲା, ତେହେରୁଁ ଲେନ୍‌ଦେନ୍ କଲାବେଲ୍‌କେ ହେଁ ବଦ୍‌ଲା ହଇଥିଲା ଦସ୍‌କତ୍ ବେଭାର୍ କର୍‌ବାକେ ପର୍‌ବା ।

ଦସ୍‌କତ୍ ଫେର୍ ଦୁଇ ପ୍ରକାର୍ ହଇପାରେ । ୧. ଫଟିକ୍ ଫଟିକ୍ ନାଁ ଲେଖ୍‌ଲା ବାଗିର୍ ଦସ୍‌କତ୍ ହଇଥିଲେଁ ତାହାକେ ବି ପଢିଁ ହେସି, ଜାନିଁ ହେସି । ୨. ଦସ୍‌କତ୍ ଏନ୍ତା ବି ଟେଟୋବେରୋ ହଇପାରେ ଜେ, ସନ୍‌ସାରର୍ ଏକ୍ ନମର୍ ହାତ୍‌ଲେଖା ପଢ଼ନ୍ନେବାଲା ବି କହି ନେଇଁ ପାରେ ସେ ଟା କାଣାଁ ଲେଖାହଇଛେ । ଇ ଦୁହି ପର୍‌କାରୁଁ ଜେନ୍ତା ଦସ୍‌କତ୍ ହେଲେଁ ବି ନାଁ ଟା ହଉଛେ ଅସଲ୍ । ଇ ଟା ଲେଖ୍‌ନେଁବାଲାର୍ ଉପ୍‌ରେଁ ନିର୍‌ଭର୍ କର୍‌ବା । ଇ ନଁ ଆପଣ୍ 'ଶ୍ୟାମ ସୁନ୍ଦର' ଲେଖ୍‌ବେ କି 'ସ୍ୟାମ୍

ସୁନ୍ଦର୍' ଲେଖିବେ କିଛି ଫରକ୍ ନେଇଁ ପରେ । ଖାଲି ଆପଣ୍‌କର୍ ସବୁ ଲେନ୍‌ଦେନ୍ ନଁ ସେ ଗୁଟେ କିସମ୍ କର୍‌ବାକେ ପର୍‌ବା । ପହେଲା ଥର ନାଁର୍ ବନାନ୍ ଆରୁ ନମୁନାଁ ଦସ୍‌କତ୍ (specimen signature) ଜେନ୍ତା ଦିଆ ହଇଥିବା, ଜେତେବେଲେଁ କାର୍‌ବାର୍ ହେବା ଜଦି ସେନ୍ତା ଲେଖା ଜିବା, ବଏଲେଁ ଇ ନଁ କିଛି ଅସୁବିଧା ନେଇଁ ହଏ ।

ଇ ନାଁ-ଗାଁ ଥିଁ, ଇ କଥାମାନ୍‌କୁଁ ବିଚାର୍‌କେ ନେଇଁ କରିଁ ଆପଣ୍‌କୁଁ ଜେନ୍ ଟା ଠିକ୍ ଲାଗୁଛେ ସେ ଟା କରୁନ୍ । ଆମେଁ ସିନେଁ ଲାଖେ ଭୁଲ୍ କର୍‌ମାଁ, ମାହାପୁରୁ ତ ଜାହା କହେବେ ଖାଲି ଠିକ୍ କଥା-ହିଁ କହେବେ । ତଥାବି, ତାକର୍ ଏକ୍ ନମର୍ ଲୋକ୍ ଅର୍‌ଜୁନ୍‌କେ ସବା ସେସେଁ କହୁଛନ, 'ଯଥେଛସି ତଥା କୁରୁ' (୧୮/ ୬୩) । ଇ ସବୁ ବିଚାର୍ ଲାଗିଁ ଆଏ । ଆମର୍ ଭାସା-ସାହିତ୍ୟ-ସଁସ୍‌କ୍ରୁତିର୍ ଗୁଟେ ଅଲ୍‌ଗା ବର୍‌କସ୍ ପରିଚୟ ଦେବାର୍ ଲାଗିଁ ଗୁଟେ ଚେରେସ୍‌ଟା । ବିଚାର୍ କରୁନ୍, ବାରୁଁବାର୍ ବିଚାର୍ କରୁନ୍ ଆରୁ ତେହେରୁଁ ଆପଣ୍‌କୁଁ ଜେନ୍ ଟା ଠିକ୍ ଲାଗୁଛେ ସେନ୍ତା କରୁନ୍ । ଜୟ୍ ପ୍ରଭୁ !

## ୬

# ସମ୍‌ଲ୍‌ପୁରି-କୁସ୍‌ଲିର୍ ଲାଗିଁ ଅଲ୍‌ଗା ଲିପି

ପ୍ରସ୍‌ନ୍ଁ :

ସମଲ୍‌ପୁରି-କୁସ୍‌ଲି ଭାସାକେ ଆପଣ୍‌ମାନେଁ କହୁଛନ୍ ଗୁଟେ ସ୍ୱୟମ୍ ସମ୍‌ପୁରନ୍ଁ ଅଲ୍‌ଗା ଭାସା ଆଏ ବଲିଁ । ତ, ଇତାର୍ ଅଲ୍‌ଗା ଲିପିଟେ ଥିବାର୍ କଥା । କେଇଛେ ?

ଉତ୍‌ତର୍ :

ସନ୍‌ସାରର୍ ସବୁ ଭାସାର୍ ଜେ ଗୁଟେ ଲେଖା ଲିପି ନିସ୍‌ଚେ ଥିବା, ଏନ୍ତା କଥା ନହେସେ । ଗୁଟେ ଲିପିର୍ ବରନ୍ଁମାଲାକେ ଗୁଟେ ଭାସା ବେଭାର୍ କରିପାରେ, ଜେନ୍ତା ଅଲ୍‌ଚିକିକେ ସାନ୍ତାଲି ବେଭାର୍ କର୍‌ସି । ଗୁଟେ ଲିପିକେ ଫେର୍ ଅନେକ୍ ଭାସା ବି ବେଭାର୍ କରିପାରନ୍, ଜେନ୍ତା ୟୁରୋପ୍ ମହାଦେସର୍ ବଡ୍‌ଭାଗ ଭାସା ରୋମାନ୍ ଲିପିର୍ ଛବିସ୍‌ଟା ବରନ୍ଁ ବେଭାର୍ କର୍‌ସନ୍ । ଅଲ୍‌ଚିକି ଥିଁ ବି ଦୁସ୍‌ରା ଆଦିବାସି ଭାସାମାନ୍‌କୁଁ ଲେଖିବାର୍ ଲାଗିଁ ଚେସ୍‌ଟା କରାଜଉଛେ ବଲିଁ ସୁନ୍‌ବାକେ ମିଲୁଛେ ।

ଆମର୍ ଦେସେଁ ଉତ୍‌ତର୍‌କେ ଆରୁ ପସ୍‌ଚିମ୍‌କେ ଦେବ୍‌ନାଗ୍ରି ଲିପି, ପୁରୁବ୍‌କେ ବଙ୍ଗାଲି ଆରୁ ଉଡିଆ ଲିପି ତ ଦଖିନ୍‌କେ ତେଲ୍‌ଗୁ, ତାମିଲ୍, କନ୍ନଡ୍ ଆରୁ ମାଲାୟାଲମ୍ ଲିପି ସବୁ ଚଲିଁଅଉଛେ । ଟିକେ ଗଁଚେ ତଫାତ୍ ଥିଲେଁ ବି ରାଜସ୍‌ଥାନିଁ, ଗୁଜ୍‌ରାଟି, ମରାଠି, ହିନ୍ଦି, ଅବଧି, ଭୋଜ୍‌ପୁରି, ମଇଥିଲି ଇତ୍ୟାଦି ଭାସାର୍ ଲିପି ହଉଛେ ଦେବ୍‌ନାଗ୍ରି । ବଙ୍ଗାଲି, ମଇଥିଲି ଆରୁ ଅହମିଆ(ଆସାମିୟା)

ଭାସାର୍ ଲିପି ହଉଛେ ବଙ୍ଗାଲି । ଉଡିଆ ଆରୁ ଇହାଦେର୍ ସମଲ୍‌ପୁରି-କୁସ୍‌ଲି ଭାସାମାନ୍‌କର୍ ଲିପି ହେଉଛେ ଉଡିଆ ।

ଜେନ୍ ଭାସାକେ ଜେନ୍ ଲିପି ନଁ ଲେଖ୍‌ଲେଁ ବି ଚଲ୍‌ବା, ଲୁକେ ଜଦି ହେଁ ଟାକେ ହଁ ବଲ୍‌ବେ । ଗୁଟେ ଲିପି ଥିଁ ଅନେକ୍‌ଟା ଭାସାକେ ଲେଖ୍‌ବାର୍ ପରିଖ୍ୟାଟେ କରିଥିଲେ ସନ୍ଥ ବିନୋବା ବାଭେ । ତାକର୍ **ଗୀତା ପ୍ରବଚନ** ବହିକେ ଭାରତର୍ ପ୍ରାୟ୍ ସବୁ ଭାସା ଥିଁ ଅନୁବାଦ୍ କରିଁ କରିଁ ସେ ସବୁକେ ଦେବ୍‌ନାଗ୍‌ରି ଲିପି ଥିଁ ଛପାବାର୍ ହିସାବ୍ କରିଥିଲେ । ଦେବ୍‌ନାଗ୍‌ରି ଲିପି ଥିଁ ଉଡିଆ ଭାସାର୍ ଟା ଆମେଁ ଦେଖିଛୁଁ । ଇତାର୍ ଉଲ୍‌ଟିଆ ହେଲା ଗୁଟେ ଭାସାର୍ ବହିପତର୍ ଅନେକ୍ ଲିପି ଥିଁ ଲେଖ୍‌ବାର୍ ଟା । ଆମର୍ ଦେସର୍ ଆର୍‌ଜ ଗୋସ୍‌ଠିର୍ ଭାସାମାନ୍‌କର୍ ଆଇମାଁ ସଁସ୍କ୍ରୁତ୍ ଭାସାକେ ସନ୍‌ସାରର୍ ପ୍ରାୟ୍ ସବୁ ଲିପିର୍ ସାଢି ପିନ୍ହା ହଇଛେ ।

ଇହାଦେ ଆମର୍ ଭାସାକେ ବଡ୍‌ଭାଗ ଲେଖକ ଉଡିଆ ଲିପିର୍ ବର୍‌ନଁମାନ୍‌କେଁ ଲେଖୁଛନ୍ । ଦେବାନନ୍ଦ୍ ହୋତାକର୍ ବାଗିର୍ କିଏ୍ କେନ୍ତା ନାଗ୍‌ରି ଲିପି ଥିଁ ବି ଲେଖୁଛନ୍ । ଜେନ୍ ଗବେସକମାନେଁ ତାକର୍ ସମଲ୍‌ପୁରି-କୁସ୍‌ଲି ଗବେସଣାଁ ଥିଁ ଇଙ୍ଗ୍‌ଲିସ୍ ଭାସାର୍ ବେଭାର୍ କରୁଛନ୍ ସେମାନେଁ ଆଇପିଏ ଆରୁ ରୋମାନ୍ ଲିପି ବେଭାର୍ କରୁଛନ୍ । ତ, ଇହାଦେ ଆମେଁ ତିନ୍ ତିନ୍‌ଟା ଲିପି ଥିଁ ସମଲ୍‌ପୁରି-କୁସ୍‌ଲିକେ ଲେଖୁଛୁଁ ଜେତେବେଲେଁ, ଫେର୍ ଗୁଟେ ନୁଆଁ ଲିପିର୍ ଦର୍‌କାର୍ ନେଇଁନଁ ବଲିଁ ମୋର୍ ବିଚାର୍ ଆଏ ।

୭

# ଦୁସ୍‌ରା ଦୁସ୍‌ରା ଭାସାମାନ୍‌କର୍ ଦୁସ୍‌ରା ଦୁସ୍‌ରା ବନାନ୍

ପ୍ରସ୍‌ନ୍ :

ଦୁସ୍‌ରା ଭାସାମାନ୍‌କର୍ ସବ୍‌ଦମାନ୍‌କେଁ 'ଦୀର୍ଘ ଈ, ଦୀର୍ଘ ଊ, ତାଲବ୍ୟ ଶ, ମୂର୍ଦ୍ଧନ୍ୟ ଷ' ଇତ୍ୟାଦି ଲେଖାହେସି । ଆମେଁ ସେଠାନେଁ ଆମର୍ ହିସାବେଁ ଦୁସ୍‌ରା ଟା ଲେଖିଲେଁ ଅସୁବିଧା ନେଇଁ ହଏ କାଏଁ ?

ଉତ୍‌ତର୍ :

ଇ ନଁ ସୁବିଧା-ଅସୁବିଧାର୍ କଥା ନେଇଁନଁ । ଜେନ୍ ଭାସାର୍ ନିଅମ୍ ସେ ଭାସାର୍ ଲାଗିଁ ଆଏ । ଆମେଁ ଜେନ୍‌ମାନେଁ ଉଡିଆ ଲିପିର୍ ସବୁ ବର୍‌ନଁ ବେଭାର୍ କରିଁ ଆମର୍ ଭାସା ଥିଁ ଲେଖା ସବୁ ତିଆର୍ କରୁଛୁଁ ବଲିଁ ଭାବୁଛୁଁ, ଆମର୍ ଲେଖାମାନ୍‌କୁଁ ଟିକେ ନିଘା କରୁଁ ।

୧. ଆମେଁ ଉଡିଆ ଲିପିର୍ 'ଳ' ମୁଲ୍‌ହୁଁ ବେଭାର୍ ନେଇଁ କର୍‌ବାର୍ । ତାର୍ ବାହାରେଁ ଆରୁ ବି କେତେ ନିଅମ୍ ମାନୁଛୁଁ ।

୨. ଉଡିଆ ସବ୍‌ଦର୍ ପହେଲା ଅଖର(syllable) 'ଓ' ହଇଥିଲେଁ ସମଲ୍‌ପୁରି-କୁସ୍‌ଲି ଥିଁ ସେ ଟା ପ୍ରାୟ୍ 'ଉ' ହେସି ।

ଜେନ୍ତା,

| ଉଡିଆ | ସମଲପୁରି-କୁସ୍‌ଲି |
|---|---|
| ଓଡ଼ିଆ | ଉଡିଆ , |
| ଓକିଲ | ଉକିଲ୍ |
| ଓଜନ | ଉଜନ୍ |
| ଓଟ | ଉଁଟ୍ |
| ଓଡ଼ିଶା | ଉଡ୍‌ସା ଇତ୍ୟାଦି । |

୩. ଅନେକ୍ ଉଡିଆ ସବ୍‌ଦର୍ 'ଣ' ସମଲପୁରି-କୁସ୍‌ଲି ଥିଁ 'ନ' ହେସି । ଜେନ୍ତା,

| ଉଡିଆ | ସମଲପୁରି-କୁସ୍‌ଲି |
|---|---|
| ଦର୍ପଣ | ଦର୍‌ପନ୍ |
| ରାଣୀ | ରାନିଁ |
| ପୁରୁଣା | ପୁର୍‌ନାଁ |
| ରଣା(ସାପ) | ରନାଁସାଁପ୍ |
| ଟାଣ | ଟାନ୍ ଇତ୍ୟାଦି । |

୪. (କ) ଉଡିଆ ସବ୍‌ଦର୍ 'ଙ୍କ' ଆରୁ 'ଙ୍ଖ' ଅଖର୍ ଠାନେଁ ସମଲପୁରି-କୁସ୍‌ଲି ଥିଁ ଆଗ୍‌ଲିର୍ ଅଖ୍‌ରେଁ 'ଁ' ଲଗେଇଁ କରିଁ 'କ' ଆରୁ 'ଖ' ଲେଖାଜାଏସି । ଜେନ୍ତା,

| ଉଡିଆ | ସମଲପୁରି-କୁସ୍‌ଲି |
|---|---|
| ବାଙ୍କ | ବାଁକ୍ |
| ସଙ୍କର | ସଁକର୍ |
| କଙ୍କଡ଼ା | କଁକ୍‌ରା |
| ମାଙ୍କଡ଼ | ମାଁକର୍ |
| ଶଙ୍ଖରୁ | ସଁଖୁଁ ଇତ୍ୟାଦି । |

୪.	(ଖ) ଉଡିଆର୍ ସମ୍ବନ୍ଧ ପଦର୍ ବିଭକ୍ତି /-ଙ୍କ, -ଙ୍କର/ ସମଲ୍‌ପୁରି-କୁସ୍‌ଲି ଥିଁ /-କର୍/ ହେସି । ଜେନ୍‌ତା,

| ଉଡିଆ | ସମଲ୍‌ପୁରି-କୁସ୍‌ଲି |
|---|---|
| ତାଙ୍କର | ତାକର୍ |
| ସେମାନଙ୍କ/ସେମାନଙ୍କର | ସେମାନ୍‌କର୍/ହେଁମାନ୍‌କର୍ |
| ଆପଣଙ୍କ/ଆପଣଙ୍କର | ଆପଣ୍‌କର୍/ଆପଣ୍‌ମାନ୍‌କର୍ |
| | (ଆପନ୍‌କର୍/ଆପନ୍‌ମାନ୍‌କର୍) |
| | ଇତ୍ୟାଦି । |

ଆମର୍ ଲେଖାମାନ୍‌କେଁ ଇ ସବୁ ରହୁଛେ । ତାର୍ ଅର୍ଥ, ଲେଖ୍‌ଲା ବେଲ୍‌କେ ଆମେଁ ଆମର୍ ଭାସାର୍ ନିଅମ୍ କିଛିଟା ମାନୁଛୁଁ । ଜଦି ସବୁ ନିଅମ୍ ମାନି ପାର୍‌ତାଁ ବଏଲେଁ ଆରୁ ଅଏନ୍ ହେତା, ଆମର୍ ଭାସାର୍ ଅଲଗ୍‌ପନ୍ ରହେତା, ଆମର୍ ସ୍ୱାଭିମାନ୍‌କେ ଆଁଚ୍ ନେଇଁ ଆଏତା ।

ସବ୍‌ଦଟେ ଦୁସ୍‌ରା ଦୁସ୍‌ରା ଭାସାମାନ୍‌କେଁ କେନ୍ତା କେନ୍ତା ଲେଖାଜଉଛେ ଆରୁ ଉଚ୍‌ଚାରଣଁ କରାଜଉଛେ, ତେହିର୍ ଗୁଟେ ଦୁଇଟା କଥା ଜାନ୍‌ଲେଁ ଆମେଁ ନିସ୍‌ଚିତ୍ ହଇପାର୍‌ମାଁ ଜେ ସବୁ ଭାସା ଥିଁ ଗୁଟେ ରକମ୍ ନେଇଁ ହଏ । **ଦୁସ୍‌ରା ଦୁସ୍‌ରା ଭାସାମାନ୍‌କର୍ ବନାନ୍ ଦୁସ୍‌ରା ଦୁସ୍‌ରା ହଉଛେ କେତେବେଲେଁ ଆମେଁ ଜେନ୍ତା କହୁଛୁଁ ହେନ୍ତା ଲେଖ୍‌ବାର୍ ଟା ହିଁ ଉଚିତ୍ ଆଏ ।**

(୧)	ଉଡିଆ ଭାସା ଥିଁ ଲେଖ୍‌ବାର୍ ଟା ସିଖ୍‌ଲା ବେଲ୍‌କେ ଜେତେବେଲେଁ କ, ଖ, ଗ, ଘ ଇତ୍ୟାଦି ସିଖାଜାଏସି, ଆମେଁ ପର୍‌ତି ବ୍ୟଞ୍ଜନ୍ ଧ୍ୱନିଁକେ ଅକାରାନ୍ତ କର୍‌ସୁଁ । ସେନ୍ତା, ତେଲ୍‌ଗୁ ଥିଁ ସେମାନେଁ ଆକାରାନ୍ତ କର୍‌ସନ୍ ଆରୁ ବଙ୍ଗାଲି ଥିଁ ଓକାରାନ୍ତ କର୍‌ସନ୍ । ତାର୍ ମାନେଁ, ଲେଖ୍‌ଲା ବେଲ୍‌କେ ସଭେ ଲେଖ୍‌ବେ /ରାମ, ଶିବ, ଗୋବିନ୍ଦ/ । ଉଡିଆ ଥିଁ ଇମାନ୍‌କର୍

ଉଚ୍ଚାରଣଁ ହେବା /ରାମ, ସିବ, ଗୋବିନ୍ଦ/, ତେଲ୍‌ଗୁ ଥିଁ ହେବା /ରାମା, ଶିବା, ଗୋବିନ୍ଦା/ ଆରୁ ବଙ୍ଗାଲି ଥିଁ ହେବା /ରାମୋ , ଶିବୋ, ଗୋବିନ୍ଦୋ/ ।

(୨) ଅନେକ୍ ସବ୍‌ଦ ଅଛେ ଉଡିଆ ଥିଁ ଲେଖାହେସି ଗୁଟେ ରକମ୍ ବଏଲେଁ ହିନ୍ଦି ଥିଁ ଆରୁ ଗୁଟେ ରକମ୍ । ଜେନ୍ତା,

| ଉଡିଆ ଥିଁ | ହିନ୍ଦି ଥିଁ |
|---|---|
| ଓଡ଼ିଆ | ଉଡ଼ୀଆ |
| ଓଡ଼ିଶା | ଉଡ଼ୀସା(ଇହାଦେ ଓଡ଼ିଶା) |
| ଖୁସି/ଖୁସୀ | ଖୁଶୀ |
| ବିକାଶ | ବିକାସ |
| ପ୍ରକାଶ | ପ୍ରକାସ |
| ବଂଶୀ | ବଂସୀ ଇତ୍ୟାଦି । |

(୩) ଅନେକ୍ ସବ୍‌ଦ ଉଡିଆ ଥିଁ ଲେଖାହଉଛେ ଗୁଟେ ରକମ୍ ବଏଲେଁ ଅବଧି ଥିଁ ଲେଖାହଉଛେ ଆରୁ ଗୁଟେ ରକମ୍ । ଜେନ୍ତା ,

| ଉଡିଆ | ଅବଧି |
|---|---|
| ଶରୀର | ସରୀରା |
| ଈଶ୍ୱର | ଈସ୍ୱର |
| କୋଶଳ | କୋସଲ |
| ଅଂଶ | ଅଂସ |
| ଲକ୍ଷ୍ମଣ | ଲଛିମନ/ଲଛମନ/ଲଖନ |
| କ୍ଷିତି | ଛିତି ଇତ୍ୟାଦି । |

(ଇ ସବୁ ତୁଲ୍‌ସି ଦାସ୍‌କର୍ **ରାମ ଚରିତ ମାନସ** ନୁଁ ନିଆହଇଛେ ।)

ଇ ସବୁ ଜାନ୍‌ଲା ଉତାଗୁଁ ହେଁ ଭାସା ଥିଁ ହେନ୍ତା ହଉଛେ ଆରୁ ଆମେଁ ତାହାକେ ଦୁସ୍‌ରା କଲେଁ ଅସୁବିଧା ହଇପାରେ ବଲିଁ ଭାବ୍‌ବାର୍ ଟା ଆରୁ ପ୍ରସ୍‌ନଁଟେ ହଇଁ ନେଇଁ ରହେ । ବାରୁଁବାର୍ ସେ କଥା ସୁନ୍‌ବାକେ ପିଚ୍‌କେଟ୍ ଲାଗିପାରେ । ତଥାବି, ଆମେଁ ଜେନ୍‌ତା କହୁଛୁଁ ହେନ୍‌ତା ଲେଖ୍‌ମାଁ ବଏଲେଁ, ଆମର୍ ବି ଆରୁ ଆମର୍ ଭାସାମାଁର୍ ବି ବଡା ମଙ୍ଗଲ୍ ହେବା । ଜୟ ମାଁ ସମ୍‌ଲେଇ !

## ୮

# ଉଧାର୍ ଆନ୍‌ଲା ସବ୍‌ଦର୍ ଚେହେରା

ପ୍ରସ୍‌ନ୍ :

ଭରନି ସାହିତ୍ୟ ଉଛବ୍ (ତା. ୧୬-୧୨-୨୦୦୭) ଦିନ୍ ଡକ୍‌ଟର୍ ପ୍ରଫୁଲ୍ଲ କୁମାର୍ ତ୍ରିପାଠି ଆଲୋଚନାଁଟେ କରିଥିଲେ । ଭରନିର୍ ଗୁଁଡିଖେଇ ସଙ୍ଗ୍‌ଖ୍ୟା-୨୦୦୮, ପ୍ରୁସ୍‌ଠା ୭୯ ନଁ ସେ ଆଲୋଚନାଁର୍ ସାରାନ୍‌ସ ପ୍ରକାସିତ୍ ହଇଛେ । ସେ ଠାନେଁ ତାକର୍ ଗୁଟେ ମତ ହେଲା,

"ସଂସ୍କୃତ ଶବ୍ଦର୍ ବନାନ୍ ଥି ଯେନ୍ ଶ/ଷ/ସ, ଜ/ଯ ଅଛେ ସେ ଶବ୍ଦକେ ସମ୍ବଲପୁରୀ ଭାଷାଥି ଲିଖଲା ବେଳେଁ ତାର୍ ବନାନ୍‌କେ ବଦଲ୍‌ବାର୍ ହକ୍ ଆମର୍ ନାଇଁନ । କେତେଠାନେ ସମ୍ବଲପୁରୀ ଲିଖାଥି ସଂସ୍କୃତ ଆଉର୍ ଉଡ଼ିଆ ଶବ୍ଦ ବେଭାର୍ କଲା ବେଳେଁ ବର୍‌କସି ଗୁଟେ ସ ଆଉର୍ ଜ ବେଭାର୍ ହଉଛେ ସେ ଟା ଠିକ୍ ନୁହେ । ଖାଲି ପଏର୍‌ଛା ସମ୍ବଲପୁରୀ ଶବ୍ଦଥି ଗୁଟେ ସ ଗୁଟେ ଜ ବେଭାର୍ ହଉ ।"
(ଭରନି ଥିଁ ଜେନ୍ତା ଛପା ହଇଛେ, ଇ ଉଦ୍‌ଧ୍ରୁତି ଥିଁ ଅବିକଲ୍ ସେନ୍ତା ଦିଆହଇଛେ ।)

ସମଲ୍‌ପୁରି-କୁସ୍‌ଲି ଭାସା ଥିଁ ଲେଖ୍‌ଲା ବେଲ୍‌କେ ଆପଣ୍ ଗୁଟେ 'ସ' ଆଉର୍ ଗୁଟେ 'ଜ' ଇତ୍ୟାଦି ବେଭାର୍ କର୍‌ବାକେ କହୁଛନ୍ ଆରୁ ବେଭାର୍ କରୁଛନ୍ । ଡକ୍‌ଟର୍ ତ୍ରିପାଠିକର୍ ବକ୍ତବ୍ୟ ଉପରେଁ ଆପଣ୍‌କର୍ ମତ କାଣାଁ ?

- ଉତ୍‌ପନ୍ନ କୁମାର୍ ଭୋଇ

ଉତ୍ତର୍ :

ଆମର୍ ଭାସା-ସାହିତ୍ୟ-ସଁସ୍କୃତି ଉନ୍ନତ୍ ହଉ ବଲିଁ ଜେ ବି ଚିନ୍ତା କରୁଛେ, ସାଧନାଁ କରୁଛେ ଆରୁ ସୁରୁସ୍ଟି କରୁଛେ ତାର୍ ପାଦେଁ ମୋର୍ କୁଟି କୁଟି ପ୍ରଣାଁମ୍ । ଡକ୍ଟର୍ ପ୍ରଫୁଲ୍ଲ କୁମାର୍ ତ୍ରିପାଠି ସେନ୍ତା ଝନ୍ଏ ସାଧକ୍ ଆନ୍ । ଖାଲି ମୋର୍ ସେନ୍‌ହୋ ସ୍ରଦ୍ଧାର୍ ପାତ୍ର ଆନ୍ ଏନ୍ତା ନହେସେ, ଆମର୍ ସମ୍‌କର୍ ସ୍ରଦ୍ଧା ଆରୁ ସମ୍ମାନର୍ ପାତ୍ର ବି ଆନ୍ । ଗୁଟେ ଭାସାର୍ ପ୍ରତିସ୍ଠାର୍ ଲାଗିଁ ତାର୍ ଅଭିଧାନ୍‌ଟେ ଆରୁ ତାର୍ ବ୍ୟାକରଣ୍‌ଟେ ଦର୍‌କାର୍, ଜଦର୍‌ବି ତାର୍ ସାହିତ୍ୟ ନିହାତି ଦର୍‌କାର୍ । ଡକ୍ଟର୍ ତ୍ରିପାଠି ଆମର୍ ଭାସାକେ ଅଭିଧାନ୍‌ଟେ ଦେଇଛନ୍ – **ସମଲ୍‌ପୁରି ଓଡ଼ିଆ ଶବ୍ଦକୋଷ** (୧୯୮୭) ଆରୁ ବ୍ୟାକରଣ୍‌ଟେ ବି – **ସମଲ୍‌ପୁରି କୋସ୍‌ଲି ବ୍ୟାକରଣ** (୨୦୦୧) ।

ଖାଲି ଇ ଲେଖକ ନହେସେ, ଡକ୍ଟର୍ ତ୍ରିପାଠି ବି ସମଲ୍‌ପୁରିକେ ଲେଖିବାର୍ ଲାଗିଁ ଉଡିଆ ଲିପିର୍ ଜେନ୍ ଜେନ୍ ବର୍‌ନଁ ଦର୍‌କାର୍ ତାର୍ ତାଲିକା ଥିଁ (**ଶବ୍ଦକୋଷ**, ୧୯୮୭) ଗୁଟେ 'ସ', ଗୁଟେ 'ଜ' ଇତ୍ୟାଦି ନେଇଛନ୍ ଆରୁ ବେଭାର୍ ବି କରିଛନ୍ । ଅବିସ୍ **ବ୍ୟାକରଣ**(୨୦୦୧) ଥିଁ ଉଡିଆ ଭାସା ଥିଁ ଜେନ୍ତା ହେସି, ଉଡିଆ ଲିପିର୍ ବଡ୍‌ଭାଗ ବର୍‌ନଁ ବେଭାର୍ ହଇଛେ । ଇ ବହିର୍ ପହେଲା ପତର୍ ନଁ 'ଭାସା' ବଲିଁ ଲେଖାହଇଛେ ବେଲ୍‌କେ ଆର ପତ୍‌ରେଁ 'ଭାଷା' ଲେଖାହଇଛେ । "ଇ ବହି ଥିଁ ସଂସ୍କୃତ ବ୍ୟାକରଣ ଆର୍ ଆଧୁନିକ୍ ଭାଷା ବିଜ୍ଞାନ-ଇ ଦୁହିଟାର୍ ସମନ୍ୱିତ ପ୍ରୟୋଗ ଦ୍ୱାରା ସମଲ୍‌ପୁରି ଭାଷାର ବର୍ଣନା କରାଯାଇଛେ ।" ବଲିଁ ଆର ପତ୍‌ରେଁ ଲେଖକ ଦୁହେ ଜେତେବେଲେଁ କହୁଛନ୍, ଖୁବ୍ ସମ୍ଭବ୍ ହେଁ ଥିର୍ ଲାଗିଁ ଉଡିଆ ଲିପିର୍ ବଡ୍‌ଭାଗ ବର୍‌ନଁ ବେଭାର୍ କରିଛନ୍ । ସଁସ୍କୃତ୍ ଭାସାର୍ ବ୍ୟାକରଣ୍‌ରେଁ ସୁତ୍ରମାନ୍‌କର୍ ଦୁଆରା ସମଲ୍‌ପୁରି-କୁସ୍‌ଲି ଭାସାକେ ବର୍‌ନନାଁ କଲେଁ ଅବିସ୍ ହେନ୍ତା ହେବା ।

ଗବେସଣାଁମାନ୍‌କେଁ ଜାହା ଦେଖିବାକେ ମିଲିଛେ, ଡକ୍‌ଟର୍ ମାଧବ୍ ସାହୁକର୍ Ph. D. Thesis( ୧୯୮୪ ) ଆରୁ ଡକ୍‌ଟର୍ ବିଜୟ କୁସ୍‌ଟଁ ତ୍ରିପାଠିକର୍ D. Lit. Thesis( ୧୯୯୨ ) ଥିଁ ଗୁଟେ 'ସ', ଗୁଟେ 'ଜ' ଆରୁ 'ଅ, ଆ, ଇ, ଉ, ଏ, ଏ, ଓ' ସ୍ୱର ସବୁ ବେଭାର୍ ହଇଛେ ।

ସମଲ୍‌ପୁରି ଥିଁ ଲେଖିଲା ବେଲ୍‌କେ ସଁସ୍‌କ୍ରୁତ୍ ଆରୁ ଉଡିଆ ସବ୍‌ଦମାନ୍‌କର୍ "ବନାନ୍‌କେ ବଦଲ୍‌ବାର୍ ହକ୍ ଆମର୍ ନାଇଁନ" ବଲିଁ ଡକ୍‌ଟର୍ ତ୍ରିପାଠି କହିଛନ୍ । **ବ୍ୟାକରଣ( ୨୦୦୧ )** ବହିର୍ ଜେନ୍ ବାକ୍ୟଟେ ଉପ୍‌ରେଁ ନିଆହଇଛେ ତାହାକେ ଦେଖୁଁ, "ଇ ବହିଥିଁ —— କରାଯାଇଛେ" ।

(୧) ଉଡିଆ ଥିଁ ଲେକ୍‌ସନ୍ /ସମ୍ବଲପୁରୀ/ । ସଁସ୍‌କ୍ରୁତ୍ ଆରୁ ଉଡିଆ, ଇ ଦୁହି ଭାସା ଥିଁ ଲେକ୍‌ସନ୍ /କୋଶଲୀ, କୋଶଳୀ/ । ଡକ୍‌ଟର୍ ପାଣିଗ୍ରାହି ଆରୁ ଡକ୍‌ଟର୍ ତ୍ରିପାଠି ଇ ଦୁହି ସବ୍‌ଦର୍ ବନାନ୍‌ମାନ୍‌କୁଁ ବଦ୍‌ଲେଇଁ କରିଁ /ସମଲ୍‌ପୁରି / ଆରୁ /କୋସ୍‌ଲି/ ଲେଖିଛନ୍ । ଆରୁ ଗଲା ଆରୁ ଗଲା ସେ ବହିର୍ ନାଁ ହଉଛେ **ସମଲ୍‌ପୁରି କୋସ୍‌ଲି ବ୍ୟାକରଣ** ।

(୨) ହେଁ ବାକ୍ୟ ଥିଁ ଅଛେ ଅଠରଟା ସବ୍‌ଦ । ତହୁନ୍ /ଇ, ଥିଁ, ଆର୍, ଇ, ଟାର୍, ସମଲ୍‌ପୁରି, କୋସ୍‌ଲି, କରାଯାଇଛେ/– ଇ ଆଟ୍‌ଟା ସବ୍‌ଦକେ ଆମେଁ ସମଲ୍‌ପୁରି-କୁସ୍‌ଲି କହିପାରୁଁ । ବାକି ଦସ୍‌ଟା ଉଡିଆ ଥିଁ ବେଭାର୍ ହେସି । ତ ଇ ବାକ୍ୟ ଟା <u>ବିକ୍ରୁତ୍ ଉଡିଆ</u> ଆଏ କି <u>ବିକ୍ରୁତ୍ ସମଲ୍‌ପୁରି-କୁସ୍‌ଲି</u> ଆଏ ? ଇ ରକ୍‌ମର୍ ପ୍ରସ୍‌ନ୍ କାଁ କରି ଅଉଛେ ? କାରନ୍, ଆମେଁ ଭାବୁଛୁଁ ଆମର୍ ଲେଖା ଥିଁ ସଁସ୍‌କ୍ରୁତ୍, ଉଡିଆ, ହିନ୍‌ଦି, ଇଙ୍ଗ୍‌ଲିସ୍ ବାଗିର୍ ଭାସାମାନ୍‌କର୍ ସବ୍‌ଦ ସବୁ ଅଛେ ଆରୁ ସେ ସବ୍‌ଦ ସବୁ ଜେନ୍ ଭାସା ନୁଁ ଜେ ଆଇଛେ ସେ ଭାସାର୍ ନିଅମ୍ ଅନ୍‌ସାରେଁ ବେଭାର୍ ହେବା । ସେ ନଁ ଜେନ୍ତା ଲେଖାହେସି, ଇ ନଁ ବି ହେନ୍ତା ଲେଖାହେବା । ବାକି, ହେନ୍ତା ନେଇଁ ହଏ । କମ୍‌ସେକମ୍ ଆମେଁ ଜାନିଥିଲା ଉଡିଆ, ହିନ୍‌ଦି, ଇଙ୍ଗ୍‌ଲିସ୍ ଭାସାମାନ୍‌କେଁ ତ ନେଇଁ ହଏ । **ସବ୍‌ଦମାନ୍‌କର୍ ମୁଲ୍ ଜେହିଁ ବି ଥଉ, ସେମାନେଁ ଜେନ୍ ଭାସା ଥିଁ ବେଭାର୍ ହେସନ୍ ସେ ଭାସାର୍ ନିଅମ୍ ମାନ୍‌ସନ୍** । (ଇ ବହିର୍ ୧୨୩ ପ୍ରୁସ୍‌ଠା ନଁ ତାଲିକାର୍ ୧୦ ନମର୍ ଦେଖୁନ୍) । ଟିକେ ଉତାରୁଁ ଇ କଥା ପୁରା ଫଟିକ୍ ହେବା ।

ଡକ୍‌ଟର୍ ତ୍ରିପାଠିକର୍ କହେବାର୍ ଆର କଥା ହେଲା, "ଖାଲି ପଏରଛା ସମଲ୍‌ପୁରି ସବ୍‌ଦ ଥିଁ ଗୁଟେ 'ସ' ଗୁଟେ 'ଜ' ବେଭାର୍ ହଉ ।" ତାର୍ ଅରଥ ହେଲା, ଆମର୍ ଭାସାର୍ ଲେଖକମାନ୍‌କୁଁ ଅଇତିହାସିକ୍ ଭାସାତତ୍ୱ(HISTORICAL LINGUISTICS)ର୍ ପନ୍‌ଡିତ୍ ହେବାକେ ପରବା ଆରୁ କେନ୍ ସବ୍‌ଦ କେନ୍ ଭାସା ନୁଁ ଆଇଛେ ଆରୁ ତାର୍ ବନାନ୍ ସେ ଭାସା ଥିଁ କେନ୍ତା ହେସି, ଇ ସବୁ ଜାନ୍‌ବାକେ ପର୍‌ବା । ନେଇଁ ତ ସଁସ୍‌କ୍ରୁତ୍ ଆରୁ ଉଡିଆ ସବ୍‌ଦମାନ୍‌କର୍ ଲାଗିଁ ଗୁଟେ କିସମ୍ ବନାନ୍ ଆରୁ ସମଲ୍‌ପୁରି ସବ୍‌ଦମାନ୍‌କର୍ ଲାଗିଁ ଆର୍ ଗୁଟେ କିସ୍‌ମର୍ ବନାନ୍ କେନ୍ତା କରିଁ ଲେଖ୍‌ବେ ? ଇ କଥା ବି ସମ୍ଭବ୍ ନହେସେ ।

ଦୁସ୍‌ରା ଦୁସ୍‌ରା ଭାସାମାନ୍‌କର୍ ସବ୍‌ଦ ସବୁ ଜେତେବେଲେଁ କେନ୍‌ସି ଗୁଟେ ଭାସା ଥିଁ ବେଭାର୍ ହେସି ସେ ସବ୍‌ଦମାନ୍‌କର୍ ହାଡ୍‌ରସା(ଧାତୁ) ଜେନ୍ତାକେ ସେନ୍ତା ରହେସି ଆରୁ ତାର୍ ରକତ୍-ମାଉଁସ୍ ଆରୁ ଚେହେରା ଜେନ୍ ଭାସା ଥିଁ ବେଭାର୍ ହଇଥିସି ସେ ଭାସାର୍ ହେସି । ଜେନ୍ତା କି, ସଁସ୍‌କ୍ରୁତ୍ /ଦା-/ ଧାତୁ ଉଡିଆ, ହିନ୍‌ଦି ଆରୁ ସମଲ୍‌ପୁରି ବାଗିର୍ ଭାସାମାନ୍‌କେଁ /ଦେ-/ ହେସି ଆରୁ ସଁସ୍‌କ୍ରୁତର୍ /ଦଦାତି/ ଠାନେଁ ଉଡିଆ ଥିଁ /ଦିଏ/ ହିନ୍‌ଦି ଥିଁ /ଦେତା ହାଏ/ ଆରୁ ସମଲ୍‌ପୁରି ଥିଁ /ଦେସି/ ହେସି । ନିଅମ୍ ହଉଛେ, ଗୁଟେ ସବ୍‌ଦକେ ଭିନ୍ ଭିନ୍ ଭାସା ବେଭାର୍ କଲା ବେଲ୍‌କେ ସେମାନେ ପହେଲା ସେ ସବ୍‌ଦକେ ନିଜର୍ କରସନ୍ । ତେହେଗୁଁ ବେଭାର୍ କରସନ୍ । ସେ ସବ୍‌ଦ ଜେନ୍ ଭାସା ଥିଁ ବେଭାର୍ ହେସି ସେ ଭାସାର୍ ବିଭକ୍ତି ନେସି, ସେ ଭାସାର୍ ରୁପ ଧରସି । ରାମସ୍ୟ, ରାମର, ରାମ୍ କା(କୀ/କେ), ରାମର୍, RAMA'S (OF RAMA) ଇତ୍ୟାଦି ଗୁଟେ କଥା ଆଏ । ବାକି, ଜେନ୍ ଭାସା ଥିଁ /ରାମ/ ବେଭାର୍ ହଇଥିବା ସେ ଭାସାର୍ ନିଅମ୍ ଅନ୍‌ସାରେଁ ତାର୍ ରୁପ ନେବା ହିଁ ନେବା । ତେହିର୍ ଲାଗିଁ ସଁସ୍‌କ୍ରୁତ୍ ଭାସା ଥିଁ ଗୁଟେ ସବ୍‌ଦର୍ ବନାନ୍ ଜେନ୍ତା ଅଛେ, ସେ ସବ୍‌ଦ ଦୁସ୍‌ରା ଭାସା ଥିଁ ବେଭାର୍ ହେଲେଁ ସେନ୍ତା ହଇ ପାରେ, ନେଇଁ ବି ହଇ ପାରେ । ସଁସ୍‌କ୍ରୁତ୍ /ଇଶ୍ୱରଃ/ ଉଡିଆ ଥିଁ ଲେଖ୍‌ଲା ବେଲ୍‌କେ /ଈଶ୍ୱର/ ହେସି ଆରୁ କହେଲା ବେଲ୍‌କେ /ଇସ୍ୱର/ ହେସି । ବାକି, ଅବଧି ଥିଁ ଲେଖ୍‌ଲା ବେଲ୍‌କେ ହେସି /ଈସ୍ୱର/ ।
(ଈସ୍ୱର ଅଂସ ଜୀବ ଅବିନାସୀ, **ରାମ ଚରିତ ମାନସ**) ।

ସବ୍‌ଦମାନ୍‌କର୍ ବନାନ୍ ଭିନ୍ ଭିନ୍ ଭାସା ଥିଁ କେନ୍ତା କେନ୍ତା ହଉଛେ ଆରୁ ଟିକେ ଦେଖାଜଉ ।

(୧) 'ବିକାଶ, ପ୍ରକାଶ, ବଂଶୀ, ଶାଶୁ, ଶ୍ୱଶୁର' ଇତ୍ୟାଦିର୍ ଲେଖାରୁପ ଉଡିଆ ଥିଁ ତାଲବ୍ୟ 'ଶ' ହେସି ଆରୁ ହିନ୍ଦି ଥିଁ ଦନ୍ତ୍ୟ 'ସ' ହେସି । 'ଖୁସି/ଖୁସୀ' ଉଡିଆ ଥିଁ ଦନ୍ତ୍ୟ 'ସ' ହେସି ଆରୁ ହିନ୍ଦି ଥିଁ ତାଲବ୍ୟ 'ଶ' ହେସି ।
(୨) 'ଶରୀର, ଈଶ୍ୱର, କୋଶଳ, ଅଂଶ' ଇତ୍ୟାଦି ଉଡିଆ ଥିଁ ତାଲବ୍ୟ 'ଶ' ହେସି ଆରୁ ଅବଧି ଥିଁ ଦନ୍ତ୍ୟ 'ସ' ହେସି । ହିନ୍ଦିବାଲେ ଆରୁ ଅବଧିବାଲେ ତାକର୍ ଭାସାମାନ୍‌କର୍ ନିଅମ୍ ଅନ୍‌ସାରେଁ ଲେଖିପାରନ୍ । ତାକର୍ ହକ୍ ଅଛେ, ବାକି ଆମର୍ ହକ୍ ନେଇଁନ୍ ବଏଲେଁ କାଁ କର୍‌ମାଁ !
(୩) ଉଡିଆ ଭାସା ଥିଁ /ଗୋପାଲଃ/-କେ /ଗୋପାଳ/, /ଲଳିତ/-କେ /ଲଳିତ/ କରିପାରନ୍, ବାକି ଆମେଁ /ଗୁପାଲ୍/ କି /ନଏଲ୍‌ତ/ କରି ନେଇଁ ପାରୁଁ । ହଉ !

ତେହେରୁଁ ଉଡିଆ ଭାସାର୍ ଲାଗିଁ ବିଦ୍ୱାନ୍‌ମାନ୍‌କର୍ ଭିତ୍‌ରୁଁ ଝନ୍‌ଏ ଇ ବିସେ ନଁ କାଣାଁ କହୁଛନ୍ ଦେଖୁଁ । ଓଡ଼ିଆ ଭାଷାତତ୍ତ୍ୱ(୧୯୧୬, ୧୯୯୫)ର୍ ଲେଖକ 'ପଣ୍ଡିତ ଶ୍ରୀ ଗୋପୀନାଥ ନନ୍ଦ ଶର୍ମ୍ମା' ଉଡିଆ ଭାସା ଥିଁ ଲେଖ୍‌ଲା ବେଲ୍‌କେ ତିନ୍‌ହିଁ 'ଶ, ଷ, ସ' ଆରୁ ଦୁହି 'ଜ, ଯ', ଏନ୍ତା କି 'ଉ, ଋ, ଌ, ଐ, ଔ' ସ୍ୱର ବର୍‌ନ୍ ସବୁ ଦର୍‌କାର୍ ବଲିଁ ତାକର୍ ଗରନ୍‌ଥ ଥିଁ କହୁଛନ୍ । 'ସ' ଆରୁ 'ଜ'-ମାନ୍‌କୁଁ ଛାଡିଁ ନେଲେଁ ବାକି ସବୁ ଉଡିଆ ଭାସାର୍ ଲାଗିଁ ଅନାବସ୍ୟକ୍ ବଲିଁ ସେ ଅନୁଭବ୍ କରୁଛନ୍ ବଲିଁ ସେନ୍ତା କିଛି ବର୍‌ନ୍‌ମାନ୍‌କୁଁ "ଗ୍ରନ୍ଥାକ୍ଷର" ବଲିଁ ନାଁ ଦେଇଛନ୍ (୧୯୯୫, ପୃସ୍‌ଠା ୪ ଆରୁ ୮) । ସେ ଫେର୍ ଇ କଥାର୍ ଉଲ୍‌ଟିଆ କଥାଟେ ଗୁଟେ ଠାନେଁ କହୁଛନ୍, "ବରରୁଚି, କାତ୍ୟାୟନ, ଭାମହ, ବସନ୍ତରାଜ ପ୍ରଭୃତି ପ୍ରାକୃତ ବ୍ୟାକୃତି ପନ୍ଥା ପଦ୍ଧତି ପରିଷ୍କାରକମାନେ ସେହି କ୍ରମ 'ଶଷୟୋଃ ସଃ' ଇତ୍ୟାକାରକ ରୂପରେ ନିୟମବଦ୍ଧ କରି ରଖିଗଲେ"(୧୯୯୫, ପୃସ୍‌ଠା ୧୯୩) ।

ବରରୁଚି ହଉଛନ୍ ସମ୍ରାଟ୍ ବିକ୍ରମାଦିତ୍ୟକର୍ ରାଜ୍‌ସଭାର୍ ନଅ ନମର୍ ରତ୍‌ନ୍ଁ, 'ରତ୍ନାନି ବୈ ବରରୁଚିର୍ନବବିକ୍ରମସ୍ୟ' । ଖ୍ରିସ୍‌ଟପର ଚତୁର୍‌ଥ-ପନ୍‌ଚମ୍ଁ ସତାବ୍‌ଦିର୍ କଥା । ବଏଲେଁ ସୁଲ୍‌ହ ସ ବରସ୍ ହେଲାନ୍ଁ ଅର୍‌ଧମାଗଧି ଇତ୍ୟାଦି ପ୍ରାକ୍ରୁତ୍ ଭାସାମାନ୍‌କେଁ ତାଲବ୍ୟ [ଶ] ଆରୁ ମୁର୍‌ଧନ୍ୟ [ଷ] ବଦ୍‌ଲିଁ କରିଁ ଦନ୍ତ୍ୟ[ସ] ହଇସାଏଲେନ୍ଁ ବଲିଁ ପ୍ରାକ୍ରୁତ୍ ଭାସାମାନ୍‌କର୍ ବ୍ୟାକରଣଁକାର୍ ପନ୍‌ଡିତ୍‌ମାନେଁ ସୁତ୍ର ବନେଇଛନ୍ 'ଶଷୟୋଃ ସଃ' । ଅସଲ୍ କଥା ହେଲା ଇ ସୁତ୍ରମାନ୍‌କର୍ ବେଭାର୍ ।

ଇ ଥିର୍ ସେସ୍ କଥା କହେଲା ବାଗିର୍ ଫେର୍ ପନ୍‌ଡିତେ କହୁଛନ୍, "ତେବେ ପିଲାଙ୍କ ମୁଖ(Reading)ରେ ଶକାର କରାଇବ କି ସକାର ? ଯଦି ଶକାର ବୋଲ, ତେବେ ପିଲାଙ୍କର ଅଭ୍ୟାସର ବିରୁଦ୍ଧ ହେବ । ଅତଏବ ଯାହା ଉଚ୍ଚାରଣରେ ଅଭ୍ୟସ୍ତ, ତାହାହିଁ ଲେଖିବା ଉଚିତ ଏବଂ ଯାହା ଲେଖିବ, ତାହାହିଁ ଉଚ୍ଚାରଣରେ ଅଭ୍ୟସ୍ତ କରିବା ଉଚିତ । ମାତ୍ର ଉଚ୍ଚାରଣ ବିରୁଦ୍ଧ ଲେଖା କିମ୍ବା ଲେଖା ବିରୁଦ୍ଧ ଉଚ୍ଚାରଣ କଥଂଚିତ୍ ଉଚିତ ହୋଇ ନ ପାରେ" (୧୯୯୫, ପ୍ରୁସ୍‌ଠା ୧୯୪) ।

ଇ ଦୁଇ ଚାଏର୍‌ଟା କଥା ନୁଁ ବର୍‌ନଁମାନ୍‌କର୍ ବେଭାର୍ ଭିନ୍ ଭିନ୍ ଭାସା ଥିଁ ଜେନ୍ତା ହଉଛେ ଆରୁ ବିଦ୍ୱାନ୍‌ମାନେଁ ଜେନ୍ତା କରୁଛନ୍ ଆରୁ କହୁଛନ୍ ଭଲ୍ କରିଁ ଜାନିଁ ହେବା । ଦୁସ୍‌ରା ପ୍ରସ୍‌ନ୍ଁ-ଉତ୍‌ତର୍‌ମାନ୍‌କେଁ ଆରୁ ଆରୁ ଉଦାହରନ୍ ବି ଅଛେ । ହେଁ ସବୁକେ ବିଚାର୍‌କେ ନେଇଁ କରିଁ ଫେର୍ ଘାଏ ନିଜର୍ ମତ ଦଉଛେଁ -

**(୧) ଆମେଁ ଜେନ୍‌ତା କହୁଛୁଁ ହେନ୍‌ତା ଲେଖ୍‌ବାର୍ ଉଚିତ୍ ଆରୁ**

**(୨) ଦୁସ୍‌ରା କେନ୍‌ସି ବି ଭାସାର୍ ନିଅମ୍ ଆମର୍ ଭାସା ଥିଁ ନେଇଁ ଲଗେଇଁ କରିଁ ଆମର୍ ଭାସାର୍ ନିଅମ୍ ଜେନ୍ ଟା ଆଏ ତାହାକେ ହିଁ ମାନ୍‌ବାର୍ ଉଚିତ୍ ।**

୯

# କୋସ୍‌ଲି କି କୁସ୍‌ଲି

ପ୍ରସ୍‌ନ୍‌ :

ଦେଖ୍‌ବାକେ ମିଲୁଛେ, କିଏ 'କୋସ୍‌ଲି' ଲେଖୁଛେ ତ କିଏ 'କୁସ୍‌ଲି' ଲେଖୁଛେ । ଇ ଥିର୍ କେନ୍ ଟା ଠିକ୍ ଆଏ ?

ଉତ୍‌ତର୍ :

ଉଡିଆ ଲିପି ଥିଁ ତିନ୍‌ଟା 'ଶ, ଷ, ସ', ଦୁଇଟା 'ଲ, ଳ' ଆରୁ ଦୁଇଟା 'ଇ, ଈ' ଅଛନ୍ । ଇ /କୋସ୍‌ଲି ~ କୁସ୍‌ଲି/ କେତେ ପ୍ରକାର୍ ଲେଖାଜେଇପାର୍‌ବା ତାର୍ ଗଣିତ୍ କସାଜଉ ।

୧) ପହେଲା ଅଖର୍ ହେବା ୨ ପ୍ରକାର୍ – କୋ, କୁ ।

୨) ମଝିର୍ ଅଖର୍ ହେବା ୬ ପ୍ରକାର୍ – ଶ, ଷ, ସ, ଶ୍, ଷ୍, ସ୍ ।

୩) ସେସର୍ ଅଖର୍ ହେବା ୪ ପ୍ରକାର୍ – ଲି, ଳି, ଲୀ, ଳୀ ।

ତ, ଏନ୍ତା କରିଁ ୨ X ୬ X ୪ = ୪୮ ପ୍ରକାର୍ ଇ ସବ୍‌ଦକେ ଲେଖାଜେଇପାର୍‌ବା ।

ଖବର୍ କାଗଜ୍‌ମାନ୍‌କେଁ ଦେଖ୍‌ବାକେ ମିଲୁଛେ – କୋଶଳୀ, କୋଶଲୀ, କୋସଳି, କୋସଲୀ ଇତ୍ୟାଦି ।

ସମ୍ଲପୁରି-କୁସ୍‌ଲି ଲେଖକ ବନ୍‌ଧୁମାନେଁ ଲେଖୁଛନ୍( ?) - କୋଶଳି, କୋଶଲୀ, କୋଶ୍‌ଲି, କୋଶ୍‌ଲୀ, କୋସଲି, କୋସଲୀ, କୋସ୍‌ଲି, କୋସ୍‌ଲୀ ଇତ୍ୟାଦି ।

ବିଚାର୍ :

୧) ସମଲପୁରି-କୁସ୍‌ଲି ଥିଁ 'ଳ' ନେଇଁ ହଏ ବଲିଁ ସଭେ ଜାନ୍‌ଇଛନ୍ ।

୨) ଇ ସବ୍‌ଦ ଥିଁ କିହେ ବି 'ଷ' ବେଭାର୍ ନେଇଁ କରନ୍ ।

୩) ଆମର୍ ଭାସାର୍ ଧ୍ୱନିଁତତ୍ୱର୍ ନିଅମ୍ ଅନ୍‌ସାରେଁ ଆମର୍ ଭାସା ଥିଁ ଏଖେଇ ଗୁଟେ 'ସ' ବେଭାର୍ ହେସି । (ଇତାର୍ ଉଚ୍‌ଚାରଣଁ ହେସି ଦାଁତ୍ ପାସେଁ ଜିବ୍ ଟିପିର୍ ସଙ୍ଘର୍ସ ଦୁଆରା ।)

୪) ସମଲପୁରି-କୁସ୍‌ଲି ଥିଁ ହ୍ରସ୍ୱ'ଇ' ସାଙ୍ଗେଁ ଦିର୍ଘ'ଈ'ର୍ ତଫାତ୍ ନେଇଁ ନଁ ବଲିଁ ଖାଲି ଗୁଟେ ଚିନ୍‌ହାଁ, ବଏଲେଁ ହ୍ରସ୍ୱ'ଇ' ହିଁ ବେଭାର୍ ହେସି ।

୫) ଉପ୍‌ରର୍ ଚାର୍‌ହି ନିଅମ୍ ଲଗାଲେଁ ଆମେଁ ଜେନ୍ ସବ୍‌ଦର୍ ଆଲୋଚନାଁ କରୁଛୁଁ, ତାର୍ ଦୁଇ ନମର୍ ବର୍‌ନଁ ହେବା 'ସ୍' ଆରୁ ତିନ୍ ନମର୍ ଅଖର୍ ହେବା 'ଲି' ।

୬) ପହେଲା ଅଖର୍ 'କୋ' ହେବା କି 'କୁ' ହେବା ତେହିର୍ ବିଚାର୍ କରୁଁ, ଜେନ୍ ଟା ଅସଲ୍ ପ୍ରସ୍‌ନଁ ଆଏ ।

୭) ଆମର୍ ଭାସାର୍ ବ୍ୟାକରଣଁର୍ ସୁତ୍ରଟେ ହେଲା, **ପ୍ରତ୍ୟୟଟେ ଲଗାଲେଁ ସବ୍‌ଦର୍ ପହେଲା ଅଖରର୍ [ଓ] ଠାନେଁ [ଉ] ହେସି ।**

ଓ → ଉ

କୋସ୍ –ଏ = କୁସେ ,

ଗୋଡ୍ –ଏଁ = ଗୁଡେଁ ,

ଗୋଡ୍ -ଅର୍ = ଗୁଡର୍ ,

ସୋର୍ –ଏଁ = ସୁରେଁ ,

ଭୋକ୍ -ଆ = ଭୁଖା ଇତ୍ୟାଦି ।

ଇ ହିସାବେଁ /କୋସଲ୍-ଇ = କୁସ୍‌ଲି/ ହେବା । ଆମର୍ ଭାସାର୍ ନିଅମ୍ ଅନ୍‌ସାରେଁ /କୁସ୍‌ଲି/ ହଉଛେ ଠିକ୍ ।

୮)   ୭ ନମର୍ ନିଅମର୍ ବ୍ୟତିକ୍ରମ୍ ବି ଅଛେ । ଜେନ୍ତା, /ଲୋକ୍‌କୁଁ, ଲୁକ୍‌କୁଁ/ , /ଲୋକର୍, ଲୁକର୍/ ଇତ୍ୟାଦି ବି ହେସି । ସେ ହିସାବେଁ /କୋସ୍‌ଲି/ ବି ଠିକ୍ ଆଏ । ଇ ସବୁ କଥାକେ ବିଚାର୍ କଲେଁ /କୁସ୍‌ଲି/ ଏକ୍‌ଦମ୍ ଠିକ୍ ଆଏ ବଏଲେଁ /କୋସ୍‌ଲି/ ବି ଠିକ୍ ଆଏ । ଜୟ୍ ପ୍ରଭୁ !

# ୧୦

# ଆମର୍ ଭାସାର୍ ନାଁ

( ୧ )

ସୁଚ୍‌ନାଁ : ତା. ୧୧-୦୯-୨୦୦୯ ଦିନ୍ **ନୁଆଁ ସକାଲ୍** କୁଟୁମ୍ ଫୋନ୍ ମେସେଜ୍‌ଟେ ପଠେଇଁ କରିଁ ଜାନ୍‌ବାକେ ମନ୍ କଲେ, 'ଆମର୍ ଭାସାର୍ ନାଁ' । ପ୍ରବନ୍‌ଧର୍ ପହେଲା ଭାଗ୍ ଛପା ହେଲା **ନୁଆଁ ସକାଲର୍** ଅସ୍‌ଟମ୍ ସଙ୍‌ଖ୍ୟା (ନୁଆଁଖେଇ ୨୦୧୦) ଥିଁ । ୨୦୧୧ର୍ ମାତୃଭାସା ସର୍‌ଭେ ବେଲ୍‌କେ ମନୋହର୍ ସାଁସ୍‌କୃତିକ୍ ସନ୍‌ସଦ୍, ଭେଡେନ୍ ପୁରା ପ୍ରବନ୍‌ଧ ଟାକେ ଛପେଇଥିଲେ ଆରୁ ଲୁକ୍‌କୁଁ ସଚେତନ୍ କର୍‌ବାକେ ତାକର୍ ହାତେଁ ବାଆଁଟିଥିଲେ । ସେ ଟା ସମ୍‌ପାଦନାଁ କରିଁ ଇ ନଁ ଦିଆହଇଛେ ।

ପ୍ରସ୍‌ନଁ :

ଆମର୍ ଭାସା କୋସ୍‌ଲି କି ସମଲ୍‌ପୁରି ? କେନ୍ ନାଁ ଥିଁ ବିସ୍‌ବ ଦର୍‌ବାରେଁ ମିଲ୍‌ବା ମାଏନ୍‌ତା ? (**ନୁଆଁ ସକାଲ୍,** ତା. ୧୧-୦୯-୨୦୦୯) ।

ଉତ୍‌ତର୍ :

ଆମର୍ ଭାସାର୍ ନାଁକେ ନେଇଁ କରିଁ ପ୍ରସ୍‌ନଁଟେ କାଁ ହେଲା ଜେ ଆଏଲା ? ସମଲ୍‌ପୁର୍ ବଲିଁ ସହର୍‌ଟେ ଅଛେ । ସମଲ୍‌ପୁର୍ ବଲିଁ ଜିଲାଟେ ବି ଅଛେ । ସମଲ୍‌ପୁରି

ବଲିଁ ଭାସାଟେ ବି ଅଛେ । ଇ ଭାସାଭାସିକର୍ ଠାନ୍ ହେଲା ବଲାଙ୍ଗିର୍, ବର୍‌ଗଡ୍, ବଉଦ୍, ଝାର୍‌ସୁଗୁଡା, କଲାହାନ୍‌ଡି, ନୁଆଁପଡା, ସମଲ୍‌ପୁର୍, ସୋନ୍‌ପୁର୍, ଦେବ୍‌ଗଡ୍, ସୁନ୍ଦର୍‌ଗଡ୍, ଅନ୍‌ଗୁଲ(ଆଟ୍‌ମଲିକ୍ ଉପଖନ୍‌ଡ) ଆଦି ଆମର୍ ରାଏଜର୍ ଏଗାରଟା ଜିଲା ଆରୁ ମହାସମୁନ୍ଦ୍,. ବସ୍ତର୍, ରାଏଗଡ୍ ଆଦି ଛତିସ୍‌ଗଡର୍ ବି କେତେକ୍ ଜାଗା । ତ, ଏଡ୍‌କିଟେ ଅନ୍‌ଚଲ୍ ନ଼ଁ ଡେଡ୍ କୋଟି ଉପ୍‌ରେଁ ଲୋକ୍.ଭାସାଟେ ବେଭାର୍ କରୁଛନ୍, ସାହିତ୍ୟ ବନାବାରେଁ ଲାଗିଛନ୍, ସବୁ ଠାନେଁ ନୁଆଁଖେଇ-ଫୁସ୍‌ପୁନି଼ଁ ମାନୁଛନ୍ ଆରୁ ସେମାନ୍‌କର୍ ଭାସାକେ ଛୁଆଟେ ଅନ୍‌ଚଲର୍ ନାଁକେ ନେଇଁ କରିଁ 'ସମଲ୍‌ପୁରି' ବଲିଁ କୁହାଜଉଛେ ! ୧୯୮୨ ତକ୍ ସବୁ ଠିକ୍ ଥିଲା । ସବୁ ଆଡର୍ ଲୋକ୍ ନିଜର୍ ଭାସାକେ ସମଲ୍‌ପୁରି, ନେଇଁ ତ ସମ୍ବଲ୍‌ପୁରି-ଉଡିଆ ବଲିଁ ଛାତି ଫୁଲେଇଁ କରିଁ କହୁଥିଲେ । ବାକି, କେନ୍ ନ଼ଁ କେନ୍ତା ହାତ୍‌ଗନ୍‌ତିଆ ହେବା ଝନ୍‌ଦୁ ଭାବୁଥିଲେ ଜେ ସମଲ୍‌ପୁରି ନେଇଁ ହଇଁ କରିଁ ଦୁସ୍‌ରା କାଏଁ ନାଁଟେ ହେଲେଁ ବନେ ହେଁତା । ସମଲ୍‌ପୁରି ନାଁ ଟା ଛୁଆଟେ ଅନ୍‌ଚଲ୍‌କେ ବଡ୍ କରୁଛେ, ସମଲ୍‌ପୁର୍ ଆରୁ ସମଲ୍‌ପୁର୍ ଜିଲାକେ ମୁଖିଆ କରୁଛେ ଆରୁ ଦୁସ୍‌ରାମାନ୍‌କୁଁ ନିଉନ୍ କରୁଛେ । ଏନ୍ତା ଗୁଟେ ଭାବ୍‌ନାଁକେ ମୁଲ୍ କରିଁ ୧୯୮୨ ମସିହା ନ଼ଁ ସମଲ୍‌ପୁର୍ ବିସ୍ୱବିଦ୍ୟାଳୟର୍ ପତ୍ରିକା '**ସପ୍ତର୍ଷିର୍ ସମ୍ବଲପୁରୀ** ଭାଷା-ସାହିତ୍ୟ ବିଶେଷାଙ୍କ' ଥିଁ କବିରାଜ୍ ସ୍ରି ପ୍ରୟାଗ୍‌ଦତ୍‌ତ ଜୋସିକର୍ ଉଡିଆ ପ୍ରବନ୍‌ଧଟେ ବାହାରିଲା । ଡିମାଇଁ ଏକର୍‌ଚାଏର୍ ସାଇଜ୍ ଥିଁ ସତେଇସ୍ ପ୍ରୁସ୍‌ଠାର୍ ଇ ଲେଖାର୍ ନାଁ "ସ୍ୱତନ୍ତ୍ର କୋଶଳୀ ଭାଷା" । ଇ ଲେଖା ଥିଁ ସମଲ୍‌ପୁର୍ ଆରୁ ସମଲ୍‌ପୁରିକେ ଜେତେ ସମ୍‌ଭବ୍ ହେତ୍‌କି ତଲ୍ କରିଁ କୋସଲ୍ ଆରୁ କୋସ୍‌ଲିକେ ସେତ୍‌କି ଉପର୍‌କେ ଟେକା ହଇଛେ । ସେ ନୁଁ ମୁଲ୍ ହେଲା ସମଲ୍‌ପୁରି-କୁସ୍‌ଲି ଝଗ୍‌ଡା । ଦଲେ "କୋଶଳୀ ଭାଷା" ପ୍ରବନ୍‌ଧ ଆରୁ ଜୋସି ଆଗ୍ୟାଁକୁଁ ବାହାବା କଲେ ଆରୁ ସେ ଦିନୁଁ କୋସ୍‌ଲି କୋସ୍‌ଲି ବଲିବସ୍‌ଲେ । ଆରୁ ଦଲେ ଇ ଥିର୍ ଲାଗିଁ ଦୁଖିତ୍ ହଇଁ କରିଁ ସଭା-ସମିତିମାନ୍‌କେଁ ତାକର୍ ପ୍ରତିକ୍ରିଆ ପ୍ରକାସ୍ କରୁଥିଲେ ।

ତେହେଗୁଁ ଟିଟ୍‌ଲାଗଡ୍ ନୁଁ ଅଧ୍ୟାପକ ଦୋଲ୍‌ଗୋବିନ୍ଦ୍ ବିସି ଆମର୍ ଭାସାର୍ ବ୍ୟାକରଣଁଟେ **କୋଶ୍‌ଲୀ ଭାଷା ସୁନ୍ଦ୍‌ରୀ**( ୧୯୮୪) ବଲିଁ ଛାପ୍‌ଲେ । **କୋଶଲ୍ ଶ୍ରୀ** ବଲିଁ ତିନ୍-ମସିଆ ପତ୍ରିକାଟେ ୧୯୮୮ ମସିହା ନଁ ବାହାର୍ କଲେ । ଖଡିଆଲ୍ ନଁ "କୋଶ୍‌ଲୀ ଭାଷା ସାହିତ୍ୟ ପରିଷଦ୍" ବଲିଁ ଅନୁସ୍‌ଠାନ୍‌ଟେ ତାର୍ ମୁଖପତ୍ର **କୋଶଲ୍ ଭାରତୀ** ୧୯୮୭ ମସିହା ନଁ ବାହାର୍ କଲା । ବଲାଙ୍ଗେର୍ ନଁ ବି ଅନେକ୍ ପିଲା ଆମର୍ ଭାସାର୍ ନାଁ କୋସ୍‌ଲି ବଲିଁ ଲେଖିବସ୍‌ଲେ । ଏତ୍‌କି ବେଲ୍ ତକ୍ କଥା ଟା କୁହୁଲୁଥିଲା ।

୧୯୯୦ ମସିହାର୍ ଖରା ମାସେଁ ସମଲ୍‌ପୁରେଁ ଡ. ନିଲ୍‌ମାଧବ୍ ପାଣିଗ୍ରାହି ନିସାନ୍ ବଲିଁ ମାସିକ୍ ପତ୍ରିକାଟେ ବାହାର୍ କଲେ । ସେ ଥିଁ ଜୋର୍ ସାହିତ୍ୟ ସାଧନାଁ ଚାଲ୍‌ଲା । ମଝିଁ ମଝିଁ ଜୋସି ଆଗ୍ୟାଁ ଆରୁ ପାଣିଗ୍ରାହି ଆଗ୍ୟାଁ ଚିଠି ପତର୍ ଦିଆ ନିଆ ହଉଥିଲେ । ଜୋସି ଆଗ୍ୟାଁକର୍ ଜୁକ୍‌ତି ହେଲା ଜେ କୋସ୍‌ଲି ନାଁ ଟା କୋସଲ୍ ରାଏଜର୍ ନାଁକେ ନେଇଁ କରିଁ ଗୁଟେ ବ୍ୟାପକ୍ ଅରଥ ଥିଁ ହେବା ଆରୁ ସମଲ୍‌ପୁରି ଗୁଟେ ଛୋଟ୍ ଜାଗାର୍ ଭାସାକେ ବୁଝାବା । ତେହିର୍ ଲାଗିଁ ସମଲ୍‌ପୁରି ନାଁକେ ମେଟେଇଁ କରିଁ କୋସ୍‌ଲି ନାଁ ବେଭାର୍ କରାଜଉ । ଜେତେବେଲେଁ ଇ କଥା ଟା ପାଣିଗ୍ରାହି ଆଗ୍ୟାଁକୁଁ ଅସହ୍ୟ ହେଲା, ସେ **ସପ୍ତର୍ଷି**(ନଭେମ୍ବର୍ ୧୯୮୨)ର୍ ହେଁ ସତେଇସ୍ ପୃସ୍‌ଠିଆ ଉଡିଆ ପ୍ରବନ୍ଧର୍ ଅସଲ୍ ଜୁକ୍‌ତିମାନ୍‌କୁଁ ନେଇଁ କାଟ୍‌ଲେଁ ନେଇଁ ଚଲେ ବଲିଁ ନିସାନ୍-୪ ବାହାର୍ କଲେ । ଇତାର୍ ନାଁ ଦେଲେ 'ପଶ୍ଚିମ୍ ଉଡ୍‌ଶାର୍ ଭାଷାର୍ ନାଆଁ ସମଲ୍‌ପୁରି' । ଇ ପ୍ରବନ୍ଧର୍ ଆକାର୍ ହଉଛେ ଡିମାଇଁ ଏକର୍ ଆଟ୍ ସାଇଜ୍ ଥିଁ ତିରିସ୍ ପୃସ୍‌ଠା । ହେଁ ତେସଠି ପୃସ୍‌ଠାର୍ ପତ୍ରିକା ଥିଁ ଡ. ସୁଦ୍‌ଧାକର ସୁପକାର୍, ପ୍ରଫେସର୍ ଗୋବିନ୍ଦ ଚନ୍ଦ୍ର ଉଦ୍‌ଗାତା, ଅଧ୍ୟାପକ ସନ୍ତୋସ୍ କୁମାର୍ ପ୍ରଧାନ୍, ସ୍ରିମାନ୍ ବିନୋଦ୍ ପସାୟତ୍ ଆରୁ ଡ. କେସବ୍ ଚନ୍ଦ୍ର ମେହେର୍ ବି ତାକର୍ ନିଜର୍ ନିଜର୍ ବିଚାର୍ ଦେଇଁ କରିଁ ପ୍ରବନ୍ଧମାନ୍ ଲେଖିଛନ୍ । ପାଣିଗ୍ରାହି ଆଗ୍ୟାଁ କାଏଁ ଥିର୍ ଲାଗିଁ ଇ

ପ୍ରବନ୍ଧ "ସମ୍ଲେଶରୀ ବନାମ୍ କୋଶଲେଶରୀ" ଲେଖ୍ଲେ ଜେ କହୁଛନ୍, "ସମ୍ବଲପୁରୀ ଭାଷା ନାଆଁ ଟା କାଟ୍ବାକେ ଆରୁ 'କୋଶଲୀ ଭାଷା' ନାଆଁ ଟା ଚଲାବାକେ ସେ (ଜୋସି ଆଗ୍ୟାଁ) ଏନ୍ତା ମରମ୍ଘାତୀ ଆରୁ ଅସଙ୍ଗତ୍ କଥାମାନ୍ ଡାକ୍ବଜା ଲେଖୁଛନ୍ ଯେ ଆମ୍ହର୍ ସଂହତିକେ ତ ସେ ଟା ସଂହାର୍ କରି ସାୟ୍ଲାନ ଆମ୍କୁଁ ଭି ସଂହାର୍ କର୍ବାକେ ବସ୍ଲାନ । ହେଁ ଥିର୍ ଉଆ୍ଜିପ୍ ଆଶଙ୍କା କରି କରି ଇ ଠାନେ ହେଁ କଥାମାନ୍ କାଟ୍ବାର୍ ଦର୍କାର୍ ପଡୁଛେ ।"(ପ୍ରୁସ୍ଠା-୧୫) ।

ଇ କଥା କଟାକଟି ଆରୁ ଜୁକ୍ତି ତର୍କ ଭିତ୍ରେଁ କେତ୍ନିଁକେତେ ତଥ୍ୟ ଆରୁ ଆବେଗ୍ ଅଛେ । **ନିସାନ୍–୪** ପଢି ସାଏଲା ଉତାରୁଁ ଦୁଇଟା କଥା ଫଟିକ୍ ହଉଛେ ।

୧. "ଗୁଟେ ଭାଷାର୍ ନାଆଁ ଥୁଁ ସେ ଭାଷାର୍ କ୍ଷୁଦ୍ରତା କି ବୃହତ୍ତା, ବ୍ୟାପ୍ତି କି ଅବ୍ୟାପ୍ତି କିହେ କେଉଁ କଲନାଁ ନେଇଁ କରନ୍ । ଯଥା – ଇଂଲିସ୍ ଭାଷା । କୋଶଲ୍ ଦେଶ୍ ବଲିଁ କେନ୍ସି ଦେଶ୍ ଇଛେନ୍ ନେଇଁନ । କିନ୍ତୁ ସମ୍ବଲପୁର୍ ଦେଶ୍ ଥିଲା ଆରୁ ଇଛେନ୍ ଭି ଅଛେ । ଅତ୍ଏବ୍, ସମ୍ବଲପୁର୍ ଦେଶର୍ ନାମାନୁସାରୀ 'ସମ୍ବଲପୁରୀ ଭାଷା' ନାମ୍ ଯଥାର୍ଥ ଆରୁ ସୁସିଦ୍ଧ୍ ।" (ନିସାନ୍-୪, ପ୍ରୁସଠା-୨୩) ।

୨. **ସମ୍ବଲପୁରି ଭାଷାକେ** ଖାଲି ଅବିଭକ୍ତ ସମଲପୁର୍ ଜିଲାର୍ ଲୁକେ ନହେସେ ଦୁସ୍ରା ଜିଲାମାନ୍କର୍ ଲୁକେ ବି ସମଲପୁରି ନାଁକେ ବେଭାର୍ କରିଁଅଉଛନ୍ । ସେମାନେଁ ହେଲେ ରାଜ୍ୟରତ୍ନ ବଲଭଦ୍ର ବହିଦାର୍, ଗଙ୍ଗା ପ୍ରସାଦ୍ ପନ୍ଡା, ପୁର୍ନଁ ଚନ୍ଦ୍ର ରଥ, ପରଖିତ୍ ଖନ୍ଡୁଆଲ୍, ସତ୍ନାରେନ୍ ବହିଦାର୍, ବିଧୁଭୁସନ୍ ଗୁରୁ, ଇନ୍ଦ୍ରମଣିଁ ସାହୁ, ସିବ ପ୍ରସାଦ୍ ପାନ୍ଡିଆ, ଉଦୟନାତ୍ ଚନ୍ଦନ୍ ଇତ୍ୟାଦି । ଇମାନେଁ ସଭେ ଅବିଭକ୍ତ ବଲାଙ୍ଗିର୍ ଜିଲାର୍ ଆରୁ ଗଡ଼ବର୍ ସହିତ୍ ସମଲପୁରି ନାଁକେ ବେଭାର୍ କରିଥିବାର୍ ଲୋକ୍ । ପ୍ରଫେସର୍ ଗୋବିନ୍ଦ ଉଦ୍ଗାତା (ବଲାଙ୍ଗିର୍) ଆରୁ

ସିରିମାନ୍ ବିନୋଦ୍ ପସାଏତ୍ (ବଲାଙ୍ଗିର୍) ବି ନିସାନ୍-୪ ଥିଁ ହେଁମାନ୍‌କର୍ ବିସେ ନଁ ଲେଖିଛନ୍ । ବାହାରର୍ ବିଦ୍ୱାନ୍‌ମାନେଁ – 'ଡକ୍ଟର୍ ମାୟାଧର ମାନସିଂ, ଗୋଲୋକ ବିହାରୀ ଧଳ, ବଂଶୀଧର ମହାନ୍ତି, ଗୋପୀନାଥ ମହାନ୍ତି, ନୀଳମଣି ମିଶ୍ର ଇତ୍ୟାଦି'- ପସ୍‌ଚିମ୍ ଓଡିସାର୍ ଭାସାକେ 'ସମ୍ବଲ୍‌ପୁରି' ନାଁ ଥିଁ ଚିନ୍‌ହେଇଛନ୍ । ଇ ସବୁ ତଥ୍ୟ ନିସାନ୍-୪ ଥିଁ ଅଛେ ।

ଇ ଝଗ୍‌ଡା ଇହାଦେ ବି ଚାଲିଛେ । ଇତାର୍ ଗୁଟେ ଫଏସଲା କର୍‌ବାକେ ପାଣିଗ୍ରାହି ଆଗ୍ୟାଁ ସମଲ୍‌ପୁରେଁ ୨, ୩ ଜାନୁଆରି ୧୯୯୩ ନଁ ସଭାଟେ ଡାକିଥିଲେ । ସେସ୍‌କେ ସେ ନେଁ ମଧ୍ୟମ୍ ପନ୍‌ଥାକେ ନିଆଜଉ ବଲିଁ ଅନେକ୍ ବକ୍ତା ଜୁକ୍ତି କଲେ ଆରୁ 'ସମଲ୍‌ପୁରି-କୁସ୍‌ଲି' ବଲିଁ ଏତ୍‌କେଁ ଲେଖାଜଉ ବଏଲେ । ସଭା ଥିଁ ଲୁକେ ହଁ ବଏଲେ ସିନେଁ, ତଥାବି କେଁ ଗୁଟେ ରହିଁଜଉଛେ ।

(୨)

ସେ ଜାହା ବି ହଉ, ଆମର୍ ଭାସାର୍ ନାଁକେ ନେଇଁ କରିଁ ଜେ ଜାହା କହିଛନ୍ ହେଁ ସବୁ ଜାନ୍‌ବାର୍ ଉଚିତ୍, କାରନ୍ ଗ୍ୟାନର୍ ଉକିଆ ଥିଁ ସବୁ କଥା ଫଟିକ୍ ହେସି । କିଏ କାଁ ବଲିଁ ଆମର୍ ଭାସାର୍ ନାଁ ବେଭାର୍ କରିଛନ୍, ଇ ନଁ ସେ ବିସେ ନଁ ସୁଚ୍‌ନାଁ ଦିଆଜିବା । ଜେନ୍ ନଁ ଦର୍‌କାର୍ ସେ ନଁ ଅଲପ୍ ବିଚାର୍ ଆଲୋଚନାଁ ବି କରାହେବା ।

୧. ଡକ୍‌ଟର୍ କୁଞ୍ଜବିହାରୀ ତ୍ରିପାଠୀ : INDIAN LINGUISTICS, VOL. 18 ( Parts 1-2, Sept.1956-57 ) :

ଇ ପତ୍ରିକା ଥିଁ ଆମର୍ ଭାସାର୍ ନାଁକେ Western Oriya Dialect ବଲିଁ କରିଁ ଡ. ତ୍ରିପାଠି ପ୍ରବନ୍ଧଟେ ଲେଖିଛନ୍ । ତାକର୍ ବହି **ଓଡ଼ିଆ ଭାଷାତତ୍ୱ ଓ ଲିପିର ବିକାଶ** ( ୧ ୯ ୭ ୭, ୧ ୯ ୯ ୭ ) ନଁ ଇ ଟାକେ 'ପଶ୍ଚିମ ଓଡ଼ିଆ ଉପଭାଷା' ବଲିଁ କହିଛନ୍ ।

୨. ପ୍ରଫେସର୍ ଗୋଲୋକ ବିହାରୀ ଧଳ : **ଭାଷାଶାସ୍ତ୍ର ପରିଚୟ** ( ୧ ୯ ୭ ୬, ୧ ୯ ୯ ୬ ) :

ଆମର୍ ଭାସା ବିସେ ନଁ ସେ ଲେଖିଛନ୍, "ମାନକ ଭାଷା ଯେମିତି ବିସ୍ତୃତ ହୋଇ ଉପଭାଷାର ସୃଷ୍ଟି ହୁଏ, ଉପଭାଷା ସେମିତି କାଳକ୍ରମେ ମାନକ ଭାଷାରେ ପରିଣତ ହୋଇଥାଏ ( ପୃଷ୍ଠା-୧ ୪ ୩ ) । .......... ଏହି ଭାଷା ସମ୍ବଲପୁର, ସୁନ୍ଦରଗଡ଼, କଳାହାଣ୍ଡି, ବଲାଙ୍ଗିର ଓ ବଉଦ ଇତ୍ୟାଦି ଅଂଚଳରେ ବ୍ୟବହୃତ ହୁଏ ବୋଲି ସାଧାରଣ ଭାବରେ କୁହାଯାଉଥିଲେ ମଧ୍ୟ ସେମାନଙ୍କ ମଧ୍ୟରେ ଯେ ସ୍ଥାନୀୟ ପାର୍ଥକ୍ୟ ଅଛି, ଏହା ନିଃସନ୍ଦେହରେ କୁହାଜାଇପାରେ । ସେହି ସମସ୍ତ ଅଂଚଳର ଭାଷା ପାଇଁ 'ସମ୍ବଲପୁରୀ' ଏକ ସାମୂହିକ ନାମ ହୋଇପାରେ ।"( ପୃଷ୍ଠା-୧ ୫ ୦ ) ।

୩. ସତ୍ୟ ନାରାୟଣ ବହିଦାର : **ସମ୍ବଲପୁରୀ ଭାଷାର ଶବ୍ଦ ବିଭବ ବା ସଂକ୍ଷିପ୍ତ ସମ୍ବଲପୁରୀ ବ୍ୟାକରଣ ଓ ରଚନା** ( ୧ ୯ ୭ ୭ ) :

**ଘୁବୁକୁଡୁ**( ୧ ୯ ୬ ୪ ) : ଇ ବହି ଥିଁ ଅଛେ ବହେଦାର୍ ଆଗ୍ୟାଁକର୍ ଅତି ବିଖ୍ୟାତ୍ ଗିତ୍ "ସମଲ୍‌ପୁରର୍ ମାଟିଁ ପାନିଁ ଝରସି ହିରା ନିଲା" । ତାର୍ ସେସ୍ ପଦେଁ ଅଛେ,

ସମଲ୍‌ପୁରର୍ ତମ୍‌ହେଁ ବାବୁ ତମ୍‌ହର୍ ସମଲ୍‌ପୁର୍ ।
ଅବଲ୍ ସମଲ୍‌ପୁରି ଲେଖ ସମଲ୍‌ପୁରି ସୁର୍ ॥

୪.	ଡକ୍ଟର୍ ଧନେଶ୍ୱର ମହାପାତ୍ର : **ମୌଳିକ ଓଡ଼ିଆ ଭାଷାତତ୍ୱ**(୧୯୮୦):

ଇ ବହିର୍ ବାସଠି ପୃସ୍ଠା ନଁ ସେ ଲେଖିଛନ୍, "ଆଜିର ସମ୍ବଲପୁରୀ ଉପଭାଷା ଯେ ଦିନେ ମାନକ ଭାଷାରେ ପରିଣତ ନହେବ, ତାହା କେହି କହି ପାରିବେ ନାହିଁ ।"

୫.	ଦେବାନନ୍ଦ୍ ହୋତା : **ବୋଲି ନୁହେ ଭାଷା** (୧୯୮୨) :

ହୋତାବାବୁ ଇ ବହି ଥିଁ ତାକର୍ ମନର୍ କଥା ଠାନେଁ ଲେଖୁଛନ୍, "ଜୟଦେବ୍ ଡନ୍‌ସନାଁ କହେସନ୍ 'ସମ୍ବଲପୁରୀ' ଏକ ଭିନ୍ନ ଭାଷା ନୁହେ । ଏହା ଓଡିଆ ।" ତେହେଗୁଁ ହୋତାବାବୁ ଲେଖୁଛନ୍, "......... ଆମର୍ ଭାଷାକେ ଇହାଦେ ସମଲ୍‌ପୁରୀ ବଲିଁ ତ କହୁଛୁଁ । ....... ଅଲ୍‌ଗା କିଛି ଗୁଟେ ନାଁ କିଏ ସୁଝାତେ ବଏଲେଁ ଠିକ୍ ହେତା । ସମସ୍ତେ ଗୁଟେ ସୁନ୍ଦର୍ ନାଁଟେ ଠିକ୍ କରୁନ୍ ।" **ବୋଲି ନୁହେ ଭାଷା** ଥିଁ ସେ ଆମର୍ ଭାସାର୍ ନାଁ 'ସମଲ୍‌ପୁରୀ' ବଲିଁ ବେଭାର୍ କରିଛନ୍ । ତାକର୍ ଆର ବହି **କୁସ୍‌ଲି ଭାସା ଗୁଟେ ଖୋଜ୍** (୨୦୦୦) ଥିଁ 'କୁସ୍‌ଲି' ଲେଖିଛନ୍ ।

୬.	କବିରାଜ୍ ପ୍ରୟାଗ୍‌ଦତ୍ତ ଜୋସି : 'କୋଶଳୀ ଭାଷା', **ସପ୍ତର୍ଷି** : ସମ୍ବଲପୁରୀ ଭାଷା-ସାହିତ୍ୟ ବିଶେଷାଙ୍କ (ନଭେମ୍ବର୍ ୧୯୮୨), ସଂପାଦକ – ଡକ୍ଟର୍ ଶ୍ରୀନିବାସ ସାହୁ :

ଇ ପ୍ରବନ୍ଧର୍ ସାମାନ୍ୟ ପରିଚୟ ଆରୁ ଆଲୋଚନାଁ ଜରୁରି ଆଏ । ପ୍ରବନ୍ଧ ଥିଁ ଅଛେ,

ପୃସ୍ଠା ୧. କୋସଲ୍ : "ଏହା ଉତ୍ତରରେ ବିନ୍ଧ୍ୟାଚଳଠାରୁ ଦକ୍ଷିଣରେ ଦଣ୍ଡକାରଣ୍ୟ ପର୍ଯ୍ୟନ୍ତ ଓ ପୂର୍ବରେ ମହାନଦୀର ଉତ୍ତର ଅବବାହିକାଠାରୁ ପଶ୍ଚିମରେ

ନାଗପୁର ବା ବେଣୁଗଙ୍ଗା ଯାଏ ବିସ୍ତୃତ ଥିଲା ।" ସେ ରାଏଜର୍ ରାଜା ଥିଲେ ଭାନୁମନ୍ତ ଆରୁ ପ୍ରଭୁ ରାମଚନ୍ଦ୍ରକର୍ ମାଁ କଉସଲ୍ୟା ଥିଲେ ସେ ରାଏଜର୍ ରାଜ୍‌କୁମାରି । "ବିନ୍ଧ୍ୟର ଉତ୍‌ତରକୁ ଉତ୍‌ତର କୋଶଳ ଓ ଦକ୍ଷିଣକୁ ଦକ୍ଷିଣ କୋଶଳ କହିଲେ ।"

ପୃସ୍ଠା ୩ . "ସମଗ୍ର କୋଶଳ ପ୍ରଦେଶର ଭାଷା ଗୋଟିଏ ଗୋଷ୍ଠୀର । ଏହା ମାଗଧୀ ପ୍ରାକୃତରୁ ଜାତ ଓ ଶୌରସେନୀର ମଧ୍ୟ ପ୍ରଭାବ ରହିଛି । ଏହାକୁ ପୂର୍ବୀ ହିନ୍ଦୀ ବା କୋଶଳୀ କୁହାଯାଏ । ଏହାର ଚାରିଗୋଟି ଶାଖା ରହିଛି । ଉତ୍‌ତରରେ ଅୱଧୀ, ଉତ୍‌ତର-ପଶ୍ଚିମକୁ ବାଘେଲଖଣ୍ଡୀ, ଦକ୍ଷିଣକୁ ଛତିଶଗଢୀ ଓ ପୂର୍ବକୁ ପୂର୍ବ କୋଶଳୀ । (ସାମାନ୍ୟ ଭାବେ ଏହାକୁ କୋଶଳୀ କହିବା ଉଚିତ, ଏହା ଲେଖକର ବିନମ୍ର ମତ, ଯାହା ପରବର୍ତ୍ତୀ ଆଲୋଚନାରୁ ବୁଝାଯାଇ ପାରିବ ।)"

ପୃସ୍ଠା ୪. ତେହେରୁଁ ଜୋସି ଆଗ୍ୟାଁ CULTURAL HERITAGE OF INDIA, VOL.–1, CALCUTTA, 1958, PP47-48 ନୁଁ ଜୟଚନ୍ଦ୍ର ନାରଙ୍ଗ, ବିଦ୍ୟାଳଂକାରକର୍ ପ୍ରବନ୍‌ଧ 'Regional Structure of India in Relation to Language and History' ନୁଁ ଉଦ୍‌ଧ୍ରୁତି ଦେଇଁ କରିଁ 'କୋସ୍‌ଲି' ବଏଲେଁ କାଣାଁ ଆଏ ଜେ ତାର୍ କଥା କହିଛନ୍ । ଟିକେ ଆଗୋ ଜୋସି ଆଗ୍ୟାଁ ଜେନ୍ ଚାଏରଟା ଭାସାର୍ କଥା କହୁଥିଲେ ତହୁଁନ୍ ଅବଧି, ବାଘେଲି ଆରୁ ଛତିସ୍‌ଗଡିମାନ୍‌କୁଁ ପୁର୍‌ବି ହିନ୍‌ଦି ବଲିଁ କହେସନ୍ । ପୁର୍‌ବି ହିନ୍‌ଦିକେ ଇ ନୁଁ ଇନ୍‌କେ 'କୋସ୍‌ଲି' ବଲିଁ କହେବାକେ ନାରଙ୍ଗ ଆଗ୍ୟାଁ ପ୍ରସ୍ତାବ୍ ଦେଲେ । ବିସ୍ୱବିଖ୍ୟାତ୍ ଭାସାତତ୍ୱବିତ୍ ସୁନିତି କୁମାର୍ ଚଟରଜି ସେ ପ୍ରସ୍‌ତାବ୍‌କେ ହଁ ବଲିଁ କରିଁ ତାକର୍ ପ୍ରବନ୍‌ଧ Linguistic Survey of India – Language and Script ଥିଁ ସୁଚନାଁ ଦେଲେ । ତାକର୍ ଇ ପ୍ରବନ୍‌ଧ ବି ସେ ବହି ଥିଁ ଅଛେ । ସେ ଦିନୁଁ ଭାରତର୍ ଭାସାତତ୍ୱବିତ୍‌ମାନେଁ 'କୋସ୍‌ଲି' ବଏଲେଁ ଗୁଟେ ଭାସାଗୋସ୍‌ଠିକେ ବୁଜ୍‌ସନ୍, ଜେନ୍ ନଁ ଅବଧି, ବାଘେଲି ଆରୁ ଛତିସ୍‌ଗଡି ଭାସାମାନେଁ ଅଛନ୍ । ଅବିସ୍ ଆମର୍ ଭାସାର୍

ରୁପ୍‌-ଗୁନ୍‌କେ ଦେଖିଁ କରିଁ ସେ ଭାସାମାନ୍‌କର୍ ସାଙ୍ଗେଁ ଗୁଟେ କୁଟୁମର୍ ଆଏ ବଲିଁ ଆମେଁ ଜୁକ୍‌ତି କରିପାରୁଁ । ତାର୍ ଅର୍ଥ ସମଲ୍‌ପୁରି ଭାସା ବି କୋସ୍‌ଲି ଭାସାଗୋସ୍‌ଠିର୍ ଆଏ ବଲି ପାରୁଁ । ଡକ୍ଟର୍ ବିଜୟ କୁସ୍‌ଟଁ ତ୍ରିପାଠି ତାକର୍ ଡି. ଲିଟ୍. ଗବେସଣାଁ (୧୯୯୨) ଥିଁ ସମଲ୍‌ପୁରିକେ କୋସ୍‌ଲି ଭାସାଗୋସ୍‌ଠିର୍ ଆଏ ବଲିଁ ଗ୍ରହଣ୍ କରିଛନ୍ ।

ପୃସ୍‌ଠା ୧୪. ଜୋସି ଆଗୟାଁ ତାକର୍ ପ୍ରବନ୍‌ଧର୍ ଦୁତିଅ ଭାଗର୍ ସେସେଁ ସିଉକାର୍ କରୁଛନ୍, "ଏହି ଅଳ୍ପ ଆଲୋଚନାରୁ ମଧ୍ୟ ଏ ଭାଷା ସ୍ୱତନ୍ତ୍ର, ସଂସ୍କୃତର ଅତି ନିକଟ ଓ ପୂର୍ବୀ ଗୋଷ୍ଠୀର ନ ହୋଇ ମଧ୍ୟ ଦେଶୀୟ ଗୋଷ୍ଠୀ ପୂର୍ବୀ-ହିନ୍ଦୀ ବା କୋଶଲୀ ଭାଷାଗୋଷ୍ଠୀର ଅନ୍ତର୍ଗତ, ଏହା ଲକ୍ଷ କରାଯାଇପାରେ ।"

ପୃସ୍‌ଠା ୧୮ "କ୍ଷେତ୍ରର ବ୍ୟାପକତା ଓ କହୁଥିବା ଲୋକ ସଂଖ୍ୟା (ପ୍ରାୟ ଏକ କୋଟି) ଦୃଷ୍ଟିରୁ ଏହାର ନାମ କ୍ଷେତ୍ର ନାମାନୁସାରେ 'କୋଶଳୀ' ହେବା ଉଚିତ । ଏ ଲେଖା ଓ ଭବିଷ୍ୟତ ଏ ସମ୍ବନ୍ଧୀୟ ଲେଖାମାନଙ୍କରେ ଏହି ନାମ ବ୍ୟବହାର କରାଯିବ ।"

ପୃସ୍‌ଠା ୨୫. " .......ଦେଶ ନାମାନୁସାରେ ଏ ଭାଷାର 'କୋଶଳୀ' ନାମ ଦେବା ହିଁ ଯଥାର୍ଥ ହେବ । ...... ପୃଥିବୀର ସର୍ବତ୍ର ମଧ୍ୟ ଦେଶ ନାମାନୁସାରେ ଭାଷା ନାମ ହୋଇଛି । କୌଣସି ନଗର ବା ଅଂଚଳ ନାମରେ କୌଣସି ଦେଶର ଭାଷା ନାମିତ ହୋଇଥିବା ଦେଖାଯାଏ ନାହିଁ । "

ବିଚାର୍ :

(୧) ସବୁ ନଁ ଦେସର୍ ନାଁକେ ନେଇଁ କରିଁ ସେ ନିର୍ ଭାସାର୍ ନାଁ ହଇଛେ ବଲ୍‌ବାର୍ କଥା ଠିକ୍ ନହେସେ । ଆମର୍ ଦେସର୍ କେତେଟା ଭାସାକେ ଦେଖିଲେଁ ତାକର୍ ନାଁ ଗୁଟେ ଜାଗା କି ରାଏଜର୍ ନାଁକେ ନେଇଁ କରିଁ ନହେସେ । ଆନ୍‌ଧ୍ରର୍ ଭାସା

ଆଏ ତେଲୁଗୁ, କେରଲର୍ ଭାସା ଆଏ ମାଲାୟାଲମ୍, ଜାମ୍ମୁ-କାସ୍ମିରର୍ ଭାସା ଆଏ ଡୋଗ୍ରି, ଗୋଆର୍ ଭାସା ଆଏ କୋଙ୍କ୍ କଣି । ବିହାର୍, ଉତ୍ତର୍ ପ୍ରଦେସ୍, ମଧ୍ୟ ପ୍ରଦେସ୍ ଆଦିର୍ ଭାସା ହଉଛେ ହିନ୍ଦି ଆରୁ ଆମର୍ ଦେସର୍ ଭାସାମାନେଁ ହଉଛନ୍ ସଁସ୍କୃତ୍, ହିନ୍ଦି, ପାଲି ଇତ୍ୟାଦି ।

(୨) ପ୍ରୁଥିବିର୍ ସବୁ ଦେସେଁ ଦେସର୍ ନାଁକେ ନେଇଁ କରିଁ ଭାସାର୍ ନାଁ ହେସି ବଲ୍‌ବାର୍ ଟା ବି ଠିକ୍ ନହେସେ । ହଲାନ୍‌ଡ୍ (ନେଦରଲେନ୍‌ଡ୍)ଦେସର୍ ଭାସାକେ ଡଚ୍ ବଲ୍‌ସନ୍, ଚିନ୍ ଦେସର୍ ଭାସାକେ ମେନ୍‌ଡରିନ୍ ବଲ୍‌ସନ୍ ଆରୁ ପାକିସ୍ତାନର୍ ଭାସା ହଉଛେ ଉର୍ଦ୍ଦୁ ।

(୩) ଜୋସି ଆଗ୍ୟାଁକର୍ ଜୁକ୍‌ତି ହେଲା, "କାଳ କ୍ରମେ ଦେଶୀୟ ରାଜ୍ୟ ବିଲୋପ ଓ ଯାତାୟାତର ସୁବିଧା ଯୋଗୁଁ ପରିସର ବ୍ୟାପକ ହେଲେହେଁ, ଏ ସମସ୍ତ ପ୍ରାନ୍ତର ଭାଷାକୁ ଉତ୍ସାସ ଭାବେ ସମ୍ବଲପୁରୀ କହିଦିଆଯାଉଛି । ବର୍ତମାନ ବାସ୍ତବ ଦୃଷ୍ଟିକୋଣରୁ ଏ ନାମର ପରିବର୍ତନ ଆବଶ୍ୟକ"(ପ୍ରୁସ୍ଠା ୨୫) ।

ଇ ଜୁକ୍ତିର୍ ଭଲ୍ ଅସାର୍ ବି ବିଚାର୍ କରାଜାଇପାରେ । ସମଲ୍‌ପୁର୍ ରାଏଜର୍ ଭାସାକେ ଅବିସ୍ ସମଲ୍‌ପୁରି ବଲିଁ କହାଜିବା । ସମଲ୍‌ପୁରି ଭାସା ଆରୁ ସମଲ୍‌ପୁରିଆ ଲୋକ୍ ବଲିଁ ରାଏଜ ଜାକର୍ ଆରୁ ଦେସ ଜାକର୍ ସବୁ ଠାନେଁ ଆମର୍ ପରିଚୟଟେ ଅଛେ । ଇ ନଁ ଆମେଁ ଜାନି ଥିଲା କଥା ଗୁଟେ ଦୁଇଟା ନଉଁ ଆରୁ ବିଛାର୍ କରୁଁ ।

**ରାମେଁଣ୍** ଆରୁ **ମହାଭାରତ୍**ମାନ୍‌କୁଁ ଇତିହାସ୍ ବଲିଁ କହେସନ୍ । ଇ ଇତିହାସ୍ ଥିଁ ମିଥିଲା ବଲିଁ ଗୁଟେ ରାଜ୍‌ଧାନିଁ ସହର୍ ଆରୁ ଗୁଟେ ରାଏଜ୍ ବି ଥିଲା । ସେ ନିର୍ ଭାସା ହଉଛେ ମଇଥିଲି । ୨୦୦୨ ମସିହା ନୁଁ ମଇଥିଲି ଆମର୍ ସମ୍ବିଧାନର୍ ଆଟ୍ ନମର୍ ସୁଚିକେ ଆଏଲାନେଁ । ଭୋଜ୍‌ପୁରି ଅବିସ୍ ଇ ତାଲିକାକେ ନହେ ପୁହୁଁଚେ । ବାକି, ହେନ୍ତା ଗୁଟେ ସହର୍ ଆରୁ ଅନ୍‌ଚଲର୍ ଭାସା ଆଏ । ମଇଥିଲି ଆରୁ ଭୋଜ୍‌ପୁରି ହଉଛନ୍ ବିହାର୍ ରାଏଜର୍ ଗୁଟେ ଗୁଟେ ଭାସା । ଇ ଦୁହି ଭାସାର୍ ମୁଳେଁ ବି ଗୁଟେ

